# ମନ ହଉଛି ଘୋଡ଼ା ଚଢ଼ିବି

ଡକ୍ଟର ଅରବିନ୍ଦ ପଟ୍ଟନାୟକ






## ଅୟନାନ୍ତ

ଲେଖକ: ଡକ୍ଟର ଅରବିନ୍ଦ ପଟ୍ଟନାୟକ, ପ୍ରକାଶକ: ସାହିତ୍ୟ ଶ୍ୱେତପଦ୍ମା, ପରିବେଷକ: ଏଥେନା ବୁକ୍ସ, ଭୁବନେଶ୍ୱର-୨, ମୂଲ୍ୟ: ୮୦ ଟଙ୍କା ।

ଭାଷା, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଏକ ଉଲ୍ଲେଖନୀୟ ସ୍ଥାନର ଅଧିକାରୀ ଡଃ. ପଟ୍ଟନାୟକଙ୍କ 'ଅୟନାନ୍ତ' ଉପନ୍ୟାସ ସମକାଳୀନ ସମାଜଜୀବନର ପ୍ରତିଛବି । ଦ୍ରୁତ ପରିବର୍ତ୍ତନଶୀଳ ସମାଜଜୀବନ ସହ ବଦଳିଯାଉଥିବା ସହରର ମାନଚିତ୍ର, ବ୍ୟକ୍ତି ଚରିତ୍ର ଆଦି ନିଖୁଣ ଭାବରେ ରୂପାୟିତ ହୋଇଛି ଏହି ଉପନ୍ୟାସରେ । ଘାତ ପ୍ରତିଘାତ ଭିତରେ ସମାଜରେ ସୁପ୍ରତିଷ୍ଠିତ ହୋଇଥିବା 'ନନ୍ଦ' ଏହି ଉପନ୍ୟାସର ମୁଖ୍ୟ ଚରିତ୍ର । ବଳିଷ୍ଠ କଥାବସ୍ତୁ ଏହି ଉପନ୍ୟାସର ବୈଶିଷ୍ଟ୍ୟ ।

**ସମାଜ : ୦୨ ଏପ୍ରିଲ୍ ୨୦୧୦ ଶୁକ୍ରବାର, ପୃଷ୍ଠା : ୦୨**

**ପ୍ରକାଶକ**

ରାଷ୍ଟ୍ରୀୟ ସାହିତ୍ୟ ସଂସ୍ଥାନ
୭୨୨/ ଜନପଥ, ଖାରବେଳ ନଗର, ୟୁନିଟ - ୩
ଭୁବନେଶ୍ୱର - ୭୫୧୦୦୧
ଦୂରଭାଷ : ୦୬୭୪ ୨୩୯୨୦୭୦

**ମୁଦ୍ରଣ**
**କମ୍ପ୍ୟୁପ୍ରିଣ୍ଟ୍**, ଲିଙ୍କରୋଡ଼ କଟକ
ଅକ୍ଷର ସଜା : ସରୋଜ କୁମାର
ପ୍ରଚ୍ଛଦ : ଶ୍ରୀ ବ୍ରଜକିଶୋର ଜେନା
ଭିତର ଅଳଙ୍କରଣ : ଶ୍ରୀ ବ୍ରଜକିଶୋର ଜେନା ଓ
ଶ୍ରୀ କମଳାକାନ୍ତ ରଥ

**ପ୍ରଥମ ସଂସ୍କରଣ**

ବିଜୟା ଦଶମୀ ୨୦୧୫

ମୂଲ୍ୟ : ସତୁରି ଟଙ୍କା ମାତ୍ର

MANA KAHUCHI GHODA CHADHIBI
A COLLECTION OF BELLES
LETTERS
DR. ARABINDA PATNAIK
PUBLISHED BY
RASHTRIYA SHAITYA SANSTHAN
722 - JANPATH, BHUBANESWAR

PRICE : ` 80\-



ISBN : 978-81-93-1182-1-6

## ନିଜ କଥା

ସରଳ ସରସ ଆମୋଦପମୋଦ ଶୈଳୀ (Amusing style)ର ନିବନ୍ଧ ବା ଲେଖାକୁ କିଏ ଲଳିତ-ନିବନ୍ଧ, କିଏ ବା ଲଘୁ ନିବନ୍ଧ ଆଦି ନାଁ ଦେବାବେଳେ, ଅଧିକାଂଶ ଆଲୋଚକ ଏହାକୁ ରମ୍ୟରଚନା ବୋଲି ଚିହ୍ନାଉଛନ୍ତି ଓ କହୁଛନ୍ତି । ଏହି ସାହିତ୍ୟିକ ଶୈଳୀଟି ଫ୍ରାନ୍‌ସରୁ ଇଂଲଣ୍ଡ ବାଟଦେଇ ଭାରତୀୟ ସାହିତ୍ୟକୁ ଆସିଥିବା କଥା ଜଣାଶୁଣା । ଏହି ପ୍ରସଙ୍ଗରେ ମହାପାତ୍ର ନୀଳମଣି ସାହୁ ଲେଖିଛନ୍ତି- "ଇଂଲଣ୍ଡରେ ପ୍ରଥମେ ବେକନ୍‌ଙ୍କୁ ଓ ଫ୍ରାନ୍‌ସରେ ମଣ୍ଟାଇନ୍‌ଙ୍କୁ ରମ୍ୟରଚନାର ରାଜା ବୋଲି କୁହାଯାଉଥିଲା, ଅଷ୍ଟାଦଶ ଶତାବ୍ଦୀରେ, ଷ୍ଟିଲ୍ ଓ ଗୋଲ୍‌ଡସ୍ମିଥ୍ ପ୍ରମୁଖ ଲେଖକବର୍ଗ ଏହି ବିଶେଷ ସାହିତ୍ୟିକ ଫର୍ମଟିକୁ ଖୁବ୍ ଜନପ୍ରିୟ କରାଇଦେଲେ, କାରଣ ଏହିମାନେ ହିଁ ପ୍ରଥମ କରି ବହୁ ସାମାଜିକ ସମସ୍ୟାକୁ ନେଇ ହାସ, ପରିହାସ, ବ୍ୟଙ୍ଗ ବିଦ୍ରୂପ ଓ ବୁଦ୍ଧିଦୀପ୍ତ ବାକ୍‌ବୈଦଗ୍ଧ୍ୟ ଦ୍ୱାରା ରମ୍ୟରଚନାର ସ୍ୱରୂପକୁ ଆକର୍ଷଣୀୟ କରାଇଦେଲେ; କିନ୍ତୁ ବର୍ତ୍ତମାନ, ରମ୍ୟରଚନା ହୋଇ ଉଠିଗଲାଣି ବହୁରୂପିଣୀ ଓ ବହୁ ଗୁଣଧାରିଣୀ ହୋଇ ଏବଂ ଏହା ମଧ୍ୟ ବର୍ତ୍ତମାନ କେବଳ ସାମାଜିକ ବା ରାଜନୈତିକ ସମସ୍ୟାକୁ ନେଇ ଗତି କରୁନାହିଁ, ମଣିଷର ଯେ କୌଣସି ନୈତିକ, ଆଧ୍ୟାତ୍ମିକ, ମନସ୍ତାତ୍ତ୍ୱିକ, ସାହିତ୍ୟିକ ଏବଂ ବ୍ୟବହାରିକ ବିଷୟବସ୍ତୁକୁ ନେଇ ଅସଂଖ୍ୟାସଂଖ୍ୟ ରମ୍ୟରଚନା ପୃଥିବୀର ବିଭିନ୍ନ ଭାଷାରେ ବୁଦ୍ଧିଦୀପ୍ତ ସୁରସିକ ପ୍ରାଜ୍ଞ ଲେଖକମାନଙ୍କ ଦ୍ୱାରା ଲେଖାଯାଇ ସାରା ବିଶ୍ୱରେ ବହୁପଠିତ ଓ ବହୁ ଆଦୃତ ହୋଇ ଉଠିଲାଣି ।" ତାଙ୍କ ମତରେ ରମ୍ୟରଚନାରେ ବଡ କଥା ହେଲା- "ତା'ର ରଚନା ଶୈଳୀ । ତା'ର ବାଚନଭଙ୍ଗୀର ବିଶେଷତ୍ୱ ।" ସେ ପୁଣି ରମ୍ୟରଚନାର ରମଣୀୟତା ସଂପର୍କରେ ଲେଖିଛନ୍ତି- "ଏହି ରମଣୀୟତାର ଅପରନାମ ହେଉଛି ଚମତ୍କାରିତା ବା ସୌନ୍ଦର୍ଯ୍ୟ ସ୍ପନ୍ଦନ । ଏହା ମୁଖ୍ୟତଃ ନିର୍ଭର କରେ ଲେଖକର ସ୍ୱତନ୍ତ୍ର ସୃଜନଧର୍ମୀ ବାକ୍‌ଭଙ୍ଗୀ, ବାକ୍ ବୈଦଗ୍ଧ୍ୟ ଓ କଳ୍ପନାସଂଚାରୀ ସ୍ୱକୀୟ ଭାଷା ଶୈଳୀ ଉପରେ ।" ଏହି ଦୃଷ୍ଟିରୁ, ପାଠକମାନେ ଏହି କ୍ଷୁଦ୍ରକାୟ ପୁସ୍ତକଟିରେ ଗୁନ୍ଥାଯାଇଥିବା ରମ୍ୟରଚନାଗୁଡିକ ପଢି, ତାର ମୂଲ୍ୟାୟନ କରିପାରିବେ । ଏଗୁଡିକ ଭିତରୁ କେତେଗୁଡିଏ ବିଭିନ୍ନ ସମୟରେ ଝଙ୍କାର, ସଂଜିବନୀ, ସ୍ୱରାଜ୍ୟ, ସମୟ ଆଦି ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା । ଏହାର ସଂପାଦକମାନଙ୍କୁ କୃତଜ୍ଞତା ଜଣାଉଛି । ବହିଟିର ପ୍ରଚ୍ଛଦ ଓ ଭିତର ମୁଖ୍ୟ ଚିତ୍ରଗୁଡ଼ିକ ଅଙ୍କନ କରିଛନ୍ତି ଶ୍ରୀ ବ୍ରଜ କିଶୋର ଜେନା ଓ ଭିତର ପୃଷ୍ଠାରେଥିବା କେତୋଟି ଚିତ୍ର ଅଙ୍କନ କରିଛନ୍ତି କମଳାକାନ୍ତ ରଥ ମୁଁ ଏଇ ଦୁଇ ବିଶିଷ୍ଟ ଚିତ୍ର ଶିଳ୍ପୀଙ୍କୁ ଧନ୍ୟବାଦ ଜଣାଉଛି । ପୁନଶ୍ଚ ସ୍ୱତଃ ପ୍ରବୃତ୍ତ ହୋଇ ଏଇ ବହିଟିକୁ ପ୍ରକାଶ କରିବାର ଦାୟିତ୍ୱ ନେଇଥିବା ସୁସାହିତ୍ୟିକ, ସୁଲେଖକ ଶ୍ରୀ ବୈକୁଣ୍ଠନାଥ ପତି ଓ ତାଙ୍କର ରାଷ୍ଟ୍ରୀୟ ସାହିତ୍ୟ ସଂସ୍ଥାନ ମୋର ବିଶେଷ ଧନ୍ୟବାଦର ପାତ୍ର । ତାଙ୍କର ନିଷ୍କପଟ ଆଗ୍ରହ ପାଖରେ ମୁଁ କୃତଜ୍ଞ ।

*ଅରବିନ୍ଦ ପଟ୍ଟନାୟକ*

## ପ୍ରକାଶକଙ୍କ କଲମରୁ....

କୃତବିଦ୍ୟ ପ୍ରାବନ୍ଧିକ ଓ ଗବେଷକ ଡକ୍ଟର ଅରବିନ୍ଦ ପଟ୍ଟନାୟକଙ୍କ ରମ୍ୟରଚନା ପୁସ୍ତକ 'ମନ କହୁଛି ଘୋଡ଼ା ଚଢ଼ିବି'ର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିବା ଅବସରରେ ଦୁଇଟି ପ୍ରସଙ୍ଗ ମୋ ମନକୁ ଆନ୍ଦୋଳିତ କରିଛି । ପ୍ରଥମତଃ ମୁଁ ଗୋଟିଏ ଉଚ୍ଚକୋଟୀର ଲଳିତ-ନିବନ୍ଧ ପୁସ୍ତକ ପ୍ରକାଶ କରିବାକୁ ଯାଉଛି; ଦ୍ୱିତୀୟତଃ ଚିନ୍ତା-ଚେତନା ଉଦ୍ରେକକାରୀ ଏହି ଚମତ୍କାର ନିବନ୍ଧର ଲେଖକ ସ୍ୱୟଂ ଜଣେ କୃତବିଦ୍ୟ ଓ ସୃଜନଶୀଳ ନୀରବ ସାଧକ । ସ୍ରଷ୍ଟା ଯେପରି ମହାନ, ସୃଷ୍ଟି ବି ସେହିପରି ମହନୀୟ । ଓଡ଼ିଆ ଜାତିର ଜୀବନ କଥା ଓ ଜୀବନ ଚିନ୍ତାକୁ ପ୍ରମାଣିକତା ଓ ମନୋଜ୍ଞ ଭାବରେ ପରିବେଷଣ କରୁଥିବା ଲବ୍ଧପ୍ରତିଷ୍ଠ କବି ଓ ସାହିତ୍ୟିକ ଶ୍ରୀଯୁକ୍ତ ହରପ୍ରସାଦ ଦାସ ଡକ୍ଟର ପଟ୍ଟନାୟକଙ୍କର ପ୍ରବନ୍ଧ ସଂକଳନ 'ପରମ୍ପରା ଓ ମୂଲ୍ୟବୋଧ' ଉପରେ ମତ ପ୍ରକାଶ କରିବାକୁ ଯାଇ, ତାଙ୍କର ବ୍ୟକ୍ତିତ୍ୱ ଓ ପ୍ରବନ୍ଧମାନଙ୍କ ସମ୍ପର୍କରେ ଯଥାର୍ଥରେ କହିଛନ୍ତି- 'ଯଶ ପ୍ରାର୍ଥୀଙ୍କ କୋଳାହଳମୟ ମଞ୍ଚ ଓ ପ୍ରେକ୍ଷାଳୟଠାରୁ ଦୂରରେ, କେବଳ ନିଜର ବିବେକ, ଅନୁସନ୍ଧିତ୍ସା ଓ ଅଧ୍ୟବସାୟ ବଳରେ ସେ ନିଜର ଏକକ ସାଧନାକୁ ଅବ୍ୟାହତ ରଖିଛନ୍ତି ବିନା ବିଜ୍ଞପ୍ତିରେ । ଓଡ଼ିଆ ଭାଷା, ସାହିତ୍ୟ, ଲୋକଧାରା ଓ ପରମ୍ପରା ଉପରେ ତାଙ୍କର ବହୁ ସୁଚିନ୍ତିତ ଓ ସୁଲିଖିତ ପ୍ରବନ୍ଧମାନଙ୍କ ସହିତ ଓଡ଼ିଆ ପାଠକମାନେ ପରିଚିତ । ମୋ ଦୃଷ୍ଟିରେ ସେ କେବଳ ଏହି ପ୍ରବନ୍ଧମାନଙ୍କରେ ତାଙ୍କର ଗବେଷଣାର ବିପୁଳତା ଓ ବିଶ୍ୱସନୀୟତା ପ୍ରତିଷ୍ଠିତ କରିନାହାଁନ୍ତି, ଜଣେ ମର୍ମଜ୍ଞର ମୌଳିକ ଦୃଷ୍ଟିକୋଣ ମଧ୍ୟ ବିକଶିତ କରିଛନ୍ତି । ତାଙ୍କର ଗଦ୍ୟ-କଳାରେ ବାକ୍-ସଂଯମ, ଯୌକ୍ତିକତା, ବହୁ ପାଠିତା, ବିଶ୍ଳେଷଣ ବିଧି ଓ ନିରଳଙ୍କାର ଗଠନ ସୌନ୍ଦର୍ଯ୍ୟ ତାଙ୍କୁ ସମକାଳୀନ ଓଡ଼ିଆ ସାହିତ୍ୟର ଜଣେ ଅତି ବିଶିଷ୍ଟ ସାଧକର ମର୍ଯ୍ୟାଦା ପ୍ରଦାନ କରେ, ଯାହା ତାଙ୍କର ସବୁ ଆଗ୍ରହୀ ପାଠକ ଜାଣନ୍ତି । ନିଜର ସ୍ୱଭାବ ଯୋଗୁ ସେ ନିଜର କୃତିକୁ ନେଇ ନୀରବ, କିନ୍ତୁ ସେ ଯେ ଅତି ନିର୍ମମ ସମଧର୍ମୀ ଆଲୋଚକ ଓ ଗଦ୍ୟକାରଙ୍କ ନିଷ୍କପଟ ପ୍ରଶଂସାର ପାତ୍ର ହୋଇପାରିଛନ୍ତି, ଏ ସତ୍ୟ ବିସ୍ମୟକର ଓ ଓଡ଼ିଆ ସାହିତ୍ୟରେ

ଅଭୂତପୂର୍ବ । ଏହା ସମ୍ଭବ ହୋଇପାରିଚି ତାଙ୍କ ରଚନାମାନଙ୍କର ବସ୍ତୁନିଷ୍ଠତା ଆକ୍ରୋଶହୀନ ପକ୍ଷଧରତା, ଦୃଷ୍ଟିର ଗଭୀରତା ଓ ପ୍ରାଞ୍ଜଳତା ହେତୁ ।' ଆଲୋଚ୍ୟ 'ମନ କହୁଚି ଘୋଡ଼ା ଚଢ଼ିବି' ପୁସ୍ତକଟିକୁ କେହି ଯଦି ନିରପେକ୍ଷ ଭାବରେ ସମାଲୋଚନା କରିବାକୁ ମନସ୍ଥ କରେ, ତେବେ ତା'ର ବିସ୍ମୟର ସୀମା ରହିବ ନାହିଁ ଯେ ଶ୍ରୀଯୁକ୍ତ ଦାସ ଯେଉଁ ମତ ଓ ମନ୍ତବ୍ୟ ପ୍ରଦାନ କରିଛନ୍ତି, ତାହା ଷୋଳଅଣା ଏହି ପୁସ୍ତକଟି ପ୍ରତି ମଧ୍ୟ ପ୍ରଯୁଜ୍ୟ- ଯଦିଓ ଏହା ଏକ ରମ୍ୟରଚନା ! ଲେଖକ ସ୍ୱୟଂ 'ନିଜ କଥା'ରେ ଉଲ୍ଲେଖ କରିଛନ୍ତି ଯେ 'ମଣିଷର ଯେ କୌଣସି ନୈତିକ, ଆଧାତ୍ମିକ, ମନସ୍ତାତ୍ତ୍ୱିକ, ସାହିତ୍ୟିକ ଏବଂ ବ୍ୟବହାରିକ ବିଷୟବସ୍ତୁକୁ ନେଇ ଅସଂଖ୍ୟାସଂଖ୍ୟ ରମ୍ୟରଚନା ପୃଥିବୀର ବିଭିନ୍ନ ଭାଷାରେ ବୁଦ୍ଧିଦୀପ୍ତ ସୁରସିକ ପ୍ରାଜ୍ଞ ଲେଖକମାନଙ୍କ ଦ୍ୱାରା ଲେଖାଯାଇ ସାରା ବିଶ୍ୱରେ ବହୁପଠିତ ଓ ବହୁ ଆଦୃତ ହୋଇଉଠିଲାଣି ।' ବାସ୍ତବରେ ରଚନାଶୈଳୀ ଓ ବାଚନଭଙ୍ଗୀର ବିଶେଷତ୍ୱ ହେତୁ ଏହି କ୍ଷୁଦ୍ର ପୁସ୍ତକଟି ଯେ ପାଠକୀୟ ସ୍ୱୀକୃତିଲାଭ କରିବ ଏଥିରେ ସନ୍ଦେହ ନାହିଁ । ରମ୍ୟରଚନା ହୋଇଥିବାରୁ ବିଷୟବସ୍ତୁ ଉପସ୍ଥାପନାରେ ତ ନିଶ୍ଚିତ ଭାବରେ ହାସ, ପରିହାସ, ବ୍ୟଙ୍ଗ ବିଦ୍ରୁପ ରହିବ, ମାତ୍ର ତା'ସହିତ ସଂସ୍କାରଧର୍ମୀ ଗମ୍ଭୀର ସମସ୍ୟାବଳୀ ଏଥିରେ ଯେଉଁଭଳି ଭାବରେ ଉପସ୍ଥାପିତ ହୋଇଛି ତାହା ସାର୍ବଜନୀନ ଓ ସର୍ବକାଳୀନ ମୂଲ୍ୟବୋଧ ଆଧାରିତ ବୋଲି ଉଲ୍ଲେଖ କଲେ ଅତିଶୟୋକ୍ତି ହେବ ନାହିଁ ।

ଏହି ପୁସ୍ତକଟିରେ ଚଉଦଟି ମନ୍ମୟ ନିବନ୍ଧ ବା ରମ୍ୟରଚନା ସ୍ଥାନ ପାଇଛି । ତନ୍ମଧ୍ୟରୁ ଗୋଟିଏ ରଚନାର ଶିରୋନାମ ହେଉଛି - 'ମନ କହୁଚି ଘୋଡ଼ା ଚଢ଼ିବି ।' ମାତ୍ର ନିବନ୍ଧଗୁଡ଼ିକର ଅନ୍ତଃସ୍ୱରକୁ ଅନୁଭବ କଲେ ବୁଝିବାକୁ କଷ୍ଟ ହେବନାହିଁ ଯେ ପ୍ରତ୍ୟେକ ରଚନାରେ ମନ ଓ ଚୈତନ୍ୟର ସମନ୍ୱୟ ଘଟିଛି; ମନସ୍ତାତ୍ତ୍ୱିକ ଦିଗର ବିଶ୍ଳେଷଣ ସ୍ଥାନ ପାଇଛି । 'ଅଇଲାଣି ବିଲାଇ' ଠାରୁ ଆରମ୍ଭ କରି ଶେଷ ନିବନ୍ଧ 'ମୋ କଥାଟି ସରିଲା' ପର୍ଯ୍ୟନ୍ତ ପ୍ରତ୍ୟେକ ଲେଖାରେ ଆମ ଚଳଣି ସଂସ୍କୃତି, ପରମ୍ପରା ସହିତ ରୀତିନୀତି, ସାମାଜିକ, ଆର୍ଥିକ ଓ ରାଜନୈତିକ ଚିତ୍ରପଟ ଅଙ୍କିତ ହୋଇଛି ।

ମୋର ଦୃଢ଼ ବିଶ୍ୱାସ ଯେ ଆଲୋଚ୍ୟ ସଂକଳନଟିର ମନ୍ମୟ ବା ଲଳିତ ନିବନ୍ଧଗୁଡ଼ିକରେ ବିଚାରବନ୍ତ ଲେଖକଙ୍କର 'wisdom in a smiling mood' ପ୍ରକାଶିତ ହୋଇଥିବାରୁ, ଏହା ପାଠକୀୟ ସ୍ୱୀକୃତି ଲାଭ କରିବ ।

**ବୈକୁଣ୍ଠନାଥ ପତି**
**ଉପଦେଷ୍ଟା**
**ରାଷ୍ଟ୍ରୀୟ ସାହିତ୍ୟ ସଂସ୍ଥାନ**

# ।। ସୂଚିପତ୍ର ।।

# ଉତ୍ସର୍ଗ





ଯଶ

ମମତା ଓ ଆରଭଙ୍କ ହାତରେ

ଅର୍ପିଯିତା

ବାବା / ଜେଜେ

ବିଜୟା ଦଶମୀ - ୨୦୧୫



## ଅଇଲାଣି ବିଲାଇ

ଆପଣ ହୁଏତ କହିବେ- ଏହା ସାହିତ୍ୟ ନା ମ୍ୟାଜିକ୍ ସମାଲୋଚନା ନା ସଂକୀର୍ତ୍ତନ, ଅର୍ଥ ନା କଦର୍ଥ । କିନ୍ତୁ ଏହା କିଛି ନୁହେ- ବ୍ୟାଖ୍ୟା ବୁଦ୍ଧି ବଳାପେକ୍ଷା । ଗଜ ଅର୍ଥ କରୁଛି-

'ବୋଇଲା-ବ୍ୟାଖ୍ୟା ବୁଦ୍ଧି ବଳାପେକ୍ଷା । ଯିଏ ଯେତେ ବୁଦ୍ଧିଆଳ, ସିଏ ସେତିକି କିସମରେ କବିଙ୍କୁ ଓ ତାଙ୍କ ଲେଖାକୁ ବୁଝାଇପାରିବ । ଏଇ ଦେଖ-'ଅଇଲାଣି ବିଲେଇ ମୂଷା ଯିବ ପଳାଇ' ଇୟେ କ'ଣ କମ୍ ପଦ ? ଏକୁ କେତେ ପ୍ରକାର ଅର୍ଥ କରାଯାଇପାରେ ଜାଣ ? ଆଖି ତରାଟି ମୁଣ୍ଡ ହଲାଇ ଅଧ୍ୟକ୍ଷ ଗଜେନ୍ଦ୍ର ହାଙ୍କିଲେ । ମୁକୁନ୍ଦ ତିଆଡ଼ିଏ ମୁଣ୍ଡ ଟୁଙ୍ଗାରି ସମର୍ଥନ କଲେ-ହଇ ମଧୁରାଓ କ'ଣ କମ୍ କବି । ହଏ ବ୍ରହ୍ମଦର୍ଶନ କରିଥିଲେଟି ସିଏ ! ଆହା-ହା-ହା ବ୍ରହ୍ମ ଶ୍ଚୁ...ଶ୍ଚୁ...ଶ୍ଚୁ ଆଖି ବୁଜି ଜପାମାଳିକୁ କୋଥଳି ସହିତ ଝଣ୍ଡା ଭଳିଆ ଉପରକୁ ଟେକି ଦଣ୍ଡବତ କଲେ ସଙ୍କର୍ଷଣ ସୁବୁଦ୍ଧି । କିଏ ତାଙ୍କୁ ଦେଖିବା ହୋଇଛନ୍ତି ବୋଲି କହିଲଟି ବାପ ?' ମଧୁରାଏ...ବର୍ଣ୍ଣବୋଧକର ଲେଖକ । ପିଲାଏ ପଢୁନାହାନ୍ତି ? ବୁଝାଇଲା ପରି କହିଲେ ତିଆଡ଼ିଏ । 'ହଇ ମୁଁ ଜାଣିନି କି ଯୋଉଥିରେ ଇହା, କମଳ ଲୋଚନ ଚଉତିଶା, କଳା କଳେବର କହ୍ନାଇ ହେରିକା ଅଛି ଟିକି ?' ...'ହଁ ସେଥିରେ ନାହିଁ କଣ ।' ଗଜ ଅର୍ଥ ବୁଝାଇବାକୁ ଅଥୟ ହେଲାଣି ।...

ସୁବୁଦ୍ଧି ଟିକିଏ ଭାବିଲା ପରି ହୋଇ ମନେପଡ଼ିଆସିଲା ପରି ମୁଣ୍ଡ କୁଣ୍ଡାଇ ପଚାରିଲେ- 'ହଏ ତାକୁ ବଳରାମ ଦାସ ହେରିକା ନେଖିଥିଲେ ନା କଣ !'

ଗାଁ ପ୍ରୌଢ଼ଶିକ୍ଷାୟତନର ସର୍ବମୟ କର୍ତ୍ତା ସମାଜସେବକ, କର୍ମୀ, ଅଧ୍ୟକ୍ଷ ଗଜେନ୍ଦ୍ର ହାଙ୍କୁଚି । 'ଅଇଲାଣି ବିଲେଇ' ଏଠି 'ବିଲେଇ' ଶବ୍ଦଟିର କଣ ଗୋଟିଏ ମାତ୍ର ଅର୍ଥ ବୋଲି ଭାବୁଛନ୍ତି ଆପଣମାନେ ? ମହାନ୍ ଗୁମର ଇଆ ଭିତରେ ଅଛି । ସତେ ଯେପରି ଶୁକ, ଶୌନକ ଆଦି ଛାଡ଼ି ଯାଇଥିବା ବ୍ରହ୍ମତତ୍ତ୍ୱର ଗୁଢ ରହସ୍ୟକୁ ମର୍ତ୍ତ୍ୟ ଲୋକରେ ପ୍ରଚାର କରିବାକୁ ବାହାରିଚି ଆମ ଗଜ ! ଦ୍ୱିଗୁଣ ତେଜରେ କହି ଚାଲିଛି-'ଏଇ ମାଷ୍ଟରମାନେ ପିଲାଙ୍କୁ ବୁଝାଇ ପାରୁନାହାନ୍ତି । ତିଆଡ଼ିଏ, ସୁବୁଦ୍ଧିଏ ତମେ ତ ସବୁ ଭାବଗ୍ରାହୀ ଲୋକ । ପାଲା, ଦାସକାଠିଆ ଦେଖିଛ ! ପୁଣି ଭଞ୍ଜ ସଭାକୁ ଯାଇଥେଲଟି ? କେତେ ଅର୍ଥ ଅର୍ଥାନ୍ତର କାଢ଼ି ବଡ଼ ବଡ଼ ବର୍କ୍ତା ପ୍ରଫେସରମାନେ ବୁଝାଇ ବୁଝାଇ ବକ୍ତୃତା ଦେଲେ ? ସବୁ କବିଙ୍କୁ ସେମିତି ବୁଝିଲେ ସିନା ହେବ ! ଖାଲି କ'ଣ ନା-ଗଲି ଅଇଲି ଯାହା ଦେଖିଥିଲି ତାହା କହିଲି ଠାସୁକୁ-ଠୁସା ! ହେଃ !' ଶ୍ରୋତାମାନେ ମୁଣ୍ଡ ଝୁଲାଇଲେ ।

ଶ୍ରୋତୃବର୍ଗ ଆଁ କରି ଆନାଇଛନ୍ତି । ଗଜ ହାଙ୍କୁଚି । 'ଅଇଲାଣି ବିଲାଇ' ମାନେ ଏଠାରେ ବିଲାଇ ହେଲା ଦୁର୍ନୀତିନିବାରଣ ବିଭାଗ । ସିଏ ଅଇଲାଣି ମାନେ ଦୁର୍ନୀତି ନିବାରଣବାଲାଏ ଜାଗ୍ରତ ହୋଇ କର୍ମତତ୍ପର ହୋଇ- ନିଶମୋଡ଼ି ଆସି ପହଞ୍ଚି ଗଲେଣି । ବର୍ତ୍ତମାନ 'ମୂଷା' ବୋଇଲେ ତସ୍କର, ଦୁର୍ନୀତି ପରାୟଣ, ଲାଞ୍ଚଖୋର ଲୋକଙ୍କର ଅବସ୍ଥା କଣ ହେବ ଆପଣମାନେ ଟିକିଏ, ଆଖିବୁଜି ଚିନ୍ତାକଲେ !

କିନ୍ତୁ ଶ୍ରୋତୃବର୍ଗ, ଖାଲି ଏତିକି ନୁହେଁ, ଏଥିରେ ଆଉରି ଏକ ଅର୍ଥ ଅଛି । 'ବି' ବୋଇଲେ ବିଭବ । 'ଲା' ତାତ୍ପର୍ଯ୍ୟ ଲାଭ । 'ଇ'  ମାନେ 'ଇଲାଗେ' କି ବର୍ତ୍ତମାନ । ଅର୍ଥ ହେଲା- ବିଭବ ଲାଭ ବାଟଦେଇ ଏଇଲାଗେ ଆସି ପହଞ୍ଚ ଗଲାଣି । କଣ ହୋଇଗଲା ସେଇଠୁ ? ଦୈନ୍ୟ, ଯିଏ କି ମୂଷା ପରି ଗାତ ଭିତରେ ଲୁଚି ରହିବାକୁ ଚାହେଁ, ସିଏ ପଳାଇଯିବ । ଧନ୍ୟ କବି, ନମସ୍ୟ ତୁମେ । କି ଗୁଢ଼ ରହସ୍ୟ ଏହା ଭିତରେ ନ ରଖିଛ ? ଗଜ ନିମିଷକ ପାଇଁ ଆଖି ବୁଜିଲା- ମୁଣ୍ଡ ଝୁଲାଇଲା ।

ଗଜ ଆଖି ମେଲାଇଲା, ପୁଣି ହାଙ୍କିଲା- ବିବୁଧ ଶ୍ରୋତୃବର୍ଗ ! କବି କେବଳ ଏତିକି ଭାବି ଏ କଥା ଲେଖି ନାହାନ୍ତି । ଏହା ଭିତରେ ଆହୁରି- ଗୁଢ଼ ଅର୍ଥ ବିଦ୍ୟମାନ । ଆପଣମାନେ ଜାଣିଥିବେ- ଆମେ କଥାପ୍ରସଙ୍ଗରେ କହୁ- 'ବାଘ ନଦେଖିଲେ ବିଲାଇ ଦେଖ ।' ଅର୍ଥାତ୍ ବାଘବୁଢ଼ାକ ବିଲେଇ ଭଳିଆ । ଆଗେ ବ୍ରିଟିଶ ରାଜୁତିରେ ଯେଉଁ ହାକିମମାନଙ୍କୁ ବାଘ କୁହାଯାଉଥିଲା, ଏଇନା ସେମାନଙ୍କୁ ବିଲାଇ କୁହାଯାଇପାରେ । ବିଲାଇ କି ମାର୍ଜାର ଆସିଗଲେ ମୂଷା ବା ମୂଷିକମାନେ ଯେପରି ଗର୍ତ୍ତରେ ପ୍ରବେଶ କରନ୍ତି, ସେହିପରି ଅଫିସର

ରୂପକ ବିଲାଇମାନଙ୍କୁ ଦେଖି ବାହାରେ ନୁଙ୍ଗୁ ନୁଙ୍ଗୁ ହେଉଥିବା ଅଧସ୍ତନ କର୍ମଚାରୀରୂପକ ମୂଷାମାନେ ଗାତ କି ସେମାନଙ୍କର ଉଦ୍ଦିଷ୍ଟ ସ୍ଥାନମାନଙ୍କୁ ଚାଲିଯିବେ । ଏହା ମୋର ନୌକରୀ କରୁଥିବା ଶ୍ରୋତାମାନେ ବେଶ୍ ହୃଦୟଙ୍ଗମ କରିପାରିବେ ।

ଏହାକୁ ଐତିହାସିକ ଦୃଷ୍ଟିକୋଣରୁ ବିଚାର କଲେ, ଆଉ ଏକ ଅର୍ଥ ପ୍ରତୀତ ହୁଏ । ଆପଣମାନେ ଶୁଣିଲେ ଅବାକ୍ ହୋଇଯିବେ( ? ) ଯେ-ମଧୁସୂଦନ ୧୮୯୫ ମସିହାରେ 'ବର୍ଣ୍ଣବୋଧ' ଛପାଇଥିଲେ । ସେତେବେଳୁ ସିଏ ୪୨ ବର୍ଷ ବୟସର ପ୍ରୌଢ଼ । ଅବସର ଗ୍ରହଣ କରିବାପାଇଁ ସେତେବେଳ ହିସାବରେ ୧୩ ବର୍ଷ ମାତ୍ର ବାକି । କବି କଳ୍ପନା-ବିଳାସୀ କି ନା । କଳ୍ପନାର ନେତ୍ରରେ ଦେଖିଛନ୍ତି- 'ଅଇଲାଣି ବିଲାଇ' ଅର୍ଥାତ୍ 'ଅବସର ନେବା ସମୟ' ପାଖେଇ ଆସିଲାଣି । ଏହାପରେ ମୁଁ- ବେସରକାରୀ ନାଗରିକ- ହିସାବରେ ସ୍ୱାଧୀନ ଭାବେ ସମାଜସେବା, ସଂଗଠନ ଇତ୍ୟାଦି କରିବି, ସ୍କୁଲରେ ଚାକିରି ସିନା କରୁଥିଲି, ନିଜେ ସ୍କୁଲ ବସାଇ ମାଷ୍ଟରନିଯୁକ୍ତ କରିବି । ମୋ ଭିତରୁ 'ଚାକିରିଆ ମନୋବୃତ୍ତି' ରୂପକ ମୂଷା ପଳାଇଯିବ । ଏଥିରୁ ପୁଣି ଏକ ସମାଜୈତିହାସିକ ଦୃଷ୍ଟିଭଙ୍ଗୀର ସୂଚନା କେହି କେହି ସମାଲୋଚକ ବାହାର କରିପାରନ୍ତି । କାହିଁକି ନା କବି ଏ ସମୟକୁ ଉତ୍କଳ ପ୍ରଦେଶରେ ଶିକ୍ଷାର ପ୍ରସାର ଲକ୍ଷ୍ୟକରି ବିଚାରୁ ଅଛନ୍ତି- ଏଥରକ ଅଜ୍ଞତାର ମୂଷିକ ଏ ଭୂମିରୁ ପଳାୟନ କରିବ । ମାତ୍ର ଶ୍ରୋତୃବର୍ଗ, ଏପରି ବିଚାରରେ ଟିକିଏ ପ୍ରମାଦ ପରିଲକ୍ଷିତ ହୁଏ । କାରଣ 'ମୂଷା' ଗଣେଶଙ୍କର ବାହନ ହୋଇଥିବାରୁ ଜ୍ଞାନର ପ୍ରତୀକ । ସୁତରାଂ ଏପରି ଅର୍ଥ ସଂଗତ ନୁହେଁ ।

ଏଥରକ ଏହାର ଅସଲ ଐତିହାସିକ ଦିଗଟି ଆପଣମାନେ ଅବଧାରଣ କରନ୍ତୁ । ସେତେବେଳକୁ ଅର୍ଥାତ୍ ବର୍ଣ୍ଣବୋଧ ପ୍ରକାଶିତ ହେବାର ୧୯ ବର୍ଷ ପୂର୍ବରୁ ଭାରତ ଜାତୀୟ କଂଗ୍ରେସର ମୂଳଭିତ୍ତି ପଡ଼ି ସାରିଥିଲା । କବି ଦୂରଦ୍ରଷ୍ଟା କି ନା ? ତେଣୁ ସେ ଜାଣିପାରିଥିଲେ, 'ବିଲାଇ କି ଭାରତୀୟ ଜାତୀୟତା' ବର୍ତ୍ତମାନ ମୂର୍ତ୍ତିମତୀ ହୋଇ ଆସିଗଲାଣି । ତେଣୁ ମୂଷାପରି ଆମକୁ ଭିତରୁ ଭିତରୁ କୋରି ଖାଇଯାଉଥିବା ବ୍ରିଟିଶ ସରକାର- ପଳାଇଯିବ । ଦେଖନ୍ତୁ, ଅବଧାନ ଦିଅନ୍ତୁ, ଏହି ପୁସ୍ତକ ପ୍ରକାଶିତ ହେବାର, ଅର୍ଥାତ୍ କବି ଏହି ଭବିଷ୍ୟତ ବାଣୀ ଉଚ୍ଚାରଣ କରିବାର ୭୨ ବର୍ଷପରେ ଭାରତରୁ 'ମୂଷା' ରୂପକ ବିଦେଶୀ ଶାସନ ପଳାଇଛି । ଏଥିପାଇଁ କବିଙ୍କୁ ବ୍ରହ୍ମା, ତ୍ରିକାଳଦର୍ଶୀ କୁହାଯାଏ । ମଧୁସୂଦନଙ୍କର ଦୁର୍ଭାଗ୍ୟ ଯେ ତାଙ୍କର ଅସଲ ରୂପକୁ ଏ ପର୍ଯ୍ୟନ୍ତ କେହି ବୁଝିପାରି ନାହାନ୍ତି ।

ଏହାର ପୁଣି ଏକ ମନସ୍ତାତ୍ତ୍ୱିକ ଦିଗ ଅଛି । କବିଙ୍କ ମନର ଅବସ୍ଥା ଏଥିରେ ଫୁଟିଛି । ଆପଣମାନେ ଶୁଣିଲେ ଅବାକ୍ ହୋଇଯିବେ, ଆମର ଭକ୍ତକବି ଜଣେ ସାମାନ୍ୟ ଶୂଳବେମାରିଆ ଥିଲେ । ଆପଣମାନଙ୍କ ଭିତରୁ ମଧ୍ୟ କେତେକଙ୍କୁ ଅବଶ୍ୟ ଭଗବାନ୍ ନକରାନ୍ତୁ, ଏଇ ରୋଗ ହୋଇଥିବ । ମଧୁ ଡିଆଡ଼ିଏ ଆଖିବୁଜି ମୁଣ୍ଡ ହଲାଇ କହିଲେ, ହଁ

ରେ ବାପ, ମୁଁ ପରା ସେଇଥିପାଇଁ ଅଫିମ୍ ଟିକିଏ ଖାଉଚି...ନ ହେଲେ... । ଗଜ ତାଳିଟାଏ ମାରିଦେଇ କହିଲା, 'ବାସ୍ ଆପଣ ଅନୁଭବ କରୁଥିବେ ଏ ବେମାରି ମୂଷାପରି ମଣିଷକୁ ଭିତରୁ କୋରି ଖାଇଯାଏ । ତେଣୁ କବି ଭାବୁଚନ୍ତି ମୋର ତ ବର୍ତ୍ତମାନ 'ବିଲାଇ' କି 'ମୃତ୍ୟୁ' ସମୟ ଆସନ୍ନ ହୋଇ ଆସିଲାଣି; ଆଉ 'ମୂଷା' ବା ଶୂଳ ବେମାରି କ'ଣ କରିବ ?'... ତିଆଡ଼ିଏ କହିଲେ- 'ହେଲେ ବାପ... ।' 'ରୁହନ୍ତୁ'-ଗଜ ହାଙ୍କୁଚି । ଏହାର ଏକ ଧାର୍ମିକ ଅର୍ଥ ମଧ୍ୟ ଅଛି । ସୁବୁଦ୍ଧିଏ ପଚାରିଲେ- 'କଣ କହିବା ହେଲେ- ଧର୍ମ ?' ଶତପଥୀଏ ନାଶ ତେଣ୍ଡି କହିଲେ- ହଁ । ଧର୍ମୋ ରକ୍ଷତି- ଧାର୍ମିକଂ...ହେଃ ।

'କବି ଥିଲେ ବ୍ରାହ୍ମଧର୍ମାବଲମ୍ବୀ ଗଜ ବୁଝାଉଛି, 'ସେତେବେଳକୁ ଏ ଦେଶରେ ଏକ ଧର୍ମସଙ୍କଟ ଉପୁଜୁଛି । ବହୁଲୋକ ଖ୍ରିସ୍ଟାନ ହୋଇ ଯାଉଛନ୍ତି । ହିନ୍ଦୁଧର୍ମ ଭିତରେ ଗ୍ଲାନି ପଶିଛି ।' 'ଗ୍ଲାନିର୍ଭବତି ଭାରତ ।' ହେଃ ହେଃ'- ଶତପଥୀଙ୍କର ସଂସ୍କୃତ ଜ୍ଞାନ ଉବୁକେଇଲା । ଗଜ ଅଧୈର୍ଯ୍ୟ ହୋଇପଡ଼ି କହିଲା- ଶୁଣନ୍ତୁ ଏଇଟି ହେଉଚି ଗଣ୍ଡି ସମୟ । ଏ ଅବସ୍ଥାରେ କବିଙ୍କର ସମସାମୟିକମାନଙ୍କ ମଧ୍ୟରୁ ଫକୀରମୋହନ କେଉଁ ଧର୍ମ ଧରିବେ ଜାଣିପାରୁ ନାହାନ୍ତି । ରାଧାନାଥଙ୍କର ହିନ୍ଦୁ ଧର୍ମ ଛାଡ଼ିବାକୁ ସାହସ କୁଳଉନାହିଁ । ବିଶ୍ୱନାଥ କରେ ବ୍ରାହ୍ମ ହୋଇ ସାରିଲେଣି । ଏସବୁ କାହିଁକି ହୋଇଛି ? ହିନ୍ଦୁଧର୍ମ... ଆମର ପବିତ୍ର ହିନ୍ଦୁଧର୍ମରେ ନାନାଦି କୁସଂସ୍କାର ପଶିବା ହେତୁ । ତେଣୁ ତାକୁ ସଂସ୍କାର କରି ଧର୍ମ ସଂସ୍ଥାପନାର୍ଥାୟ ବହୁ ସଂସ୍କାରକ ଜନ୍ମିଥିଲେ । ସେମାନେ ହେଲେ- ରାଜା ରାମମୋହନ ରାୟ, କେଶବଚନ୍ଦ୍ର ସେନ୍, ମହର୍ଷି ଦେବେନ୍ଦ୍ରନାଥ ଠାକୁର ଇତ୍ୟାଦି । ଏମାନେ ହେଲେ ବିଲାଇ, କୁସଂସ୍କାରଗ୍ରସ୍ତ ବ୍ରାହ୍ମଣମାନେ, ଯେଉଁମାନଙ୍କୁ ଲକ୍ଷ୍ୟ କରି କବୀର ଗାଇଥିଲେ-

'ବ୍ରାହ୍ମନ ଭୈୟାତୋ କ୍ୟା ଭାୟା
କୁଲ ଲପଟେ ସୁତ
ଭକ୍ତିଭାବ କା ମରମ ନ ଜାନେ
ଐସା ଜଙ୍ଗଲୀ ଭୂତ ।'

ସେମାନେ ହେଲେ ମୂଷା । ତେଣୁ କବି କହୁଛନ୍ତି; ଏମାନେ ଏଣିକି ପଳାଇବେ ଏବଂ ମୂଷାମାନେ ପଳାଇଲେ- ଅମାରରେ ଧାନ ସୁରକ୍ଷିତ ହୋଇ ରହିଲାଭଳି ହିନ୍ଦୁଧର୍ମ ସୁରକ୍ଷିତ ହୋଇରହିବ ।

ତିଆଡ଼ିଏ, ଶତପଥୀଏ, ମିଶ୍ରେ, ନନ୍ଦେ ଦାନ୍ତ ଚୋବାଇ କୋରସ ଦେଲେ- "ଯେଁ ... କଣ କହିଲୁ ? ହ୍ୟାପୋ ଚଣ୍ଡାଳ ।" ଗଜ ବକ୍ତାସୁଲଭ ବିନମ୍ରଭଙ୍ଗୀରେ କହିଲା- 'ଆହା ଆପଣମାନେ ରାଗିଲେ କି ? କବି ଆପଣମାନଙ୍କୁ ଏଠାରେ ଲକ୍ଷ୍ୟ କରି ନାହାନ୍ତି । ସେଥିପାଇଁ

ମୁଁ ତ କହିଛି କୁସଂସ୍କାରଗ୍ରସ୍ତ ବ୍ରାହ୍ମଣ । ଆପଣମାନେ ହେଲେ ବ୍ରାହ୍ମଣ- ଉତ୍କୃଷ୍ଟ ବ୍ରାହ୍ମଣ, କୁସଂସ୍କାରଗ୍ରସ୍ତ ନୁହନ୍ତ ।' ନାଗ, ଅହିରାଜ, ଅଜଗର-ବୃନ୍ଦ ମନ୍ତ୍ର ଶୁଣି ମୁଗ୍ଧ ହେଲେ । ଫଣା ନୁଆଁଇଲେ । ସବୁଟି ମୁଣ୍ଡ ହଲାଇ କହିଲେ- ନା ଆମେ ବ୍ରାହ୍ମଣ, ଖାଣ୍ଟି ବ୍ରାହ୍ମଣ, ଶାସନୀ ବ୍ରାହ୍ମଣ । କାନ୍ୟକୁବ୍ଜରୁ ଆସିଥିଲୁଁ । ଗଜ ମନେ ମନେ ଉଷତ ହେଲା । ବକ୍ତୃତାର ଗହନତର ପ୍ରଦେଶକୁ ଓହ୍ଲାଇଲା ।

'ଏହାର ଆହୁରି ଏକ ତାତ୍ପର୍ଯ୍ୟ ଅଛି । ଆଙ୍ଗୁଠିରେ ଗଣନ୍ତୁ- "ଅ ଇ ଲା ଣି ବି ଲା ଇ ମୂ ଷା ଯି ବ ପ ଲା ଇ । ସମୁଦାୟ ୧୪ଟି ଅକ୍ଷର । କବି କଣ ୧୬ ଅକ୍ଷରି ରାମକେରୀ, ନବାକ୍ଷରୀ ଭାଗବତ ବୃତ୍ତ ବା ଅନ୍ୟାନ୍ୟ ପାହାଡ଼ିଆ କେଦାର, ପଞ୍ଚମ ବରାଡ଼ି, ଧନଶ୍ରୀ ଇତ୍ୟାଦିରେ ଲେଖି ପାରି ନ ଥାନ୍ତେ ! ତେବେ ଏପରି ୧୪ ଅକ୍ଷରୀ ପଦ୍ଟିଏ ଲେଖିଲେ କାହିଁକି ? ପୁଣି ଏହା ଦୁଇପାଦରେ ବିଭକ୍ତ । ପ୍ରତି ପାଦ ୭ ଅକ୍ଷର ବିଶିଷ୍ଟ । ଏହାର ତାତ୍ପର୍ଯ୍ୟ ଅଛି । ସାତ ଏବଂ ଚଉଦ ଆମର ପ୍ରିୟ ସଂଖ୍ୟା, ଆଦିକବି କିଏ ?" ଗଜ କୋଶ୍ଚିନ୍ ପକେଇ ଦେଲା ! ସୁବୁଦ୍ଧିଏ ଉଁ ଚୁଁ ହୋଇ କହିଲେ- ଇହା...ଜଗନ୍ନାଥ ଦାସେ ।' ଗଜ ମନେ ମନେ ଚିଡ଼ିଲା ଓ ସଂଶୋଧନ କରି କହିଲା-"ହେଃ, ବାଲ୍ମୀକି ।"

ତା'ପରେ ପୁନଶ୍ଚ ଅନର୍ଗଳ ଭାଷଣ-ଆଦିକବି ବାଲ୍ମୀକି ପବିତ୍ର ରାମାୟଣ ଗ୍ରନ୍ଥକୁ ସାତ କାଣ୍ଡରେ ବିଭକ୍ତ କରିଛନ୍ତି । ସିଏ କ'ଣ ଅଷ୍ଟମ କାଣ୍ଡ ଲେଖି ପାରି ନଥାନ୍ତେ ନା ଛ' କାଣ୍ଡରେ ସାରିପାରି ନ' ଥାନ୍ତେ ? ତା' ପରେ ପୁଣି ତା'ର ପ୍ରଧାନ ନାୟକ ପ୍ରଭୁ ଶ୍ରୀ ରାମଚନ୍ଦ୍ର-ଚଉଦ ବର୍ଷ ବନବାସ ଯାଇଥିଲେ । ଏହି ସାତ ସଂଖ୍ୟାକୁ ଆପଣମାନେ ବ୍ୟାସଙ୍କ ମହାଭାରତରେ ମଧ୍ୟ ଦେଖିବେ, ସେଥିରେ ମହାରଥୀଙ୍କ ସଂଖ୍ୟା ସାତ, ଆକାଶକୁ ଅନାନ୍ତୁ- ସେଥିରେ ସପ୍ତର୍ଷିମଣ୍ଡଳ ଦେଖିବେ । ଋଷି ହେଲେ ସାତ । ପୁଣି 'ବାଘ ନିଶ ହଲାନା' ରଙ୍ଗ ସଂଖ୍ୟା ସାତ । ଇନ୍ଦ୍ରଧନୁର ରଙ୍ଗ ସାତ । ସୂର୍ଯ୍ୟଙ୍କର ଘୋଡ଼ାର ସଂଖ୍ୟା ସାତ । ଏଠାରେ ସ୍ମରଣ କରାଯାଇପାରେ କି ପ୍ରାଚୀନ ଉତ୍କଳରେ ସୌର ପୂଜା ପ୍ରଚଳିତ ଥିଲା । କୋଣାର୍କର ସୂର୍ଯ୍ୟମନ୍ଦିର ଏବଂ ରବିନାରାୟଣ ବ୍ରତ ଇତ୍ୟାଦିରେ ତା'ର ପ୍ରମାଣ ରହିଅଛି । କବିଙ୍କୁ ଏହା ପ୍ରଭାବିତ କରିଥିବା ବିଚିତ୍ର ନୁହେଁ । ପୁଣି ଦେଖନ୍ତୁ ଆମେ ସକାଳେ ଉଠିଲେ ସାତଜଣ ଚିରଂଜୀବୀ ଲୋକଙ୍କୁ ସ୍ମରଣ କରୁ । ସୁବୁଦ୍ଧିଏ ତମେ ଜାଣିଥିବ-

ଅଶ୍ୱତ୍ଥାମା ବଳିର୍ବ୍ୟାସୋ ହନୁମାନ୍ଶ୍ଚ ବୀଭୀଷଣଃ

କୃପ ପରଶୁରାମଶ୍ଚ ସପ୍ତୈତେ ଚୀରଜୀବୀନଃ ।

ଏମାନେ ହେଲେ ସାତ । ପୁଣି ଆମର ବାର ସଂଖ୍ୟା ସାତ । ମାସକ ଦୁଇପକ୍ଷ । ସାତକୁ ଦୁଇରେ ଗୁଣିଲେ କେତେ ? ଗଜ ଅଙ୍କ ପଚାରି ଦେଲା । ଶତପଥୀଏ କହିଲେ, 'ଚ୍ୟତୁର୍ଦ୍ଦଶ ।'- 'ହଁ ।' ଚତୁର୍ଦ୍ଦଶ ବା ୧୪ । ଏଉଟି ହେଲା ଆହୁରି ଶୁଭ ସଂଖ୍ୟା । ଆମେ

ଚଉଦ ପୁରୁଷଙ୍କୁ ପାଣି ଦେଉଁ । ଭୁବନ ହେଲା ଚତୁର୍ଦ୍ଦଶ । ପୁଣି ଆପଣମାନେ ଶୁଣିଲେ ଆଶ୍ଚର୍ଯ୍ୟ ହୋଇଯିବେ ଯେ ଏହା ସ୍ୱାଧୀନତା ପରଯାଏ ଆମକୁ ଗୋଡ଼ାଇ ଆସିଥିଲା । ଆମ ସଂବିଧାନ-ବିଧାୟକମାନେ ପ୍ରଥମେ ୧୪ଟି ମାତ୍ର ଭାଷାକୁ ସ୍ୱୀକୃତି ଦେଇଥିଲେ । ଏବେ ଦେଖନ୍ତୁ ଯେ, ସେଥିରେ ଓଲମ ବିଲମ ହେବାରୁ ଭାରତସାରା ଭାଷା-ସମସ୍ୟା ମୁଣ୍ଡ ଟେକିଛି । କିଓ ସେତେବେଳେ କ'ଣ ସେମାନେ ଆଉ ଦିଅଣ୍ଡା ଭାଷାକୁ ସ୍ୱୀକୃତି ଦେଇ ପାରି ନ ଥାନ୍ତେ । ନା ଭାରତରେ କିଛି ଭାଷା ଉଣା ପଡ଼ିଛି ? ତିଆଡ଼ିଏ କହିଲେ- ହଇଓ ଭାରତରେ ନାହିଁ କ'ଣ ବୋଇଲା ଯାହା ନାଇଁ ଭାରତେ, ତାହା ନାଇଁ ଜଗତେ ! ହେଃ !"...'କ'ଣ ଗୁଡ଼ାଏ ଅବାନ୍ତର କଥା କହୁଛନ୍ତି ?' ଗଜ ହାଙ୍କି ଦେଲା ମଝିରେ । ତିଆଡ଼ିଏ ହେଣ୍ଡାଳିଲେ- 'ଆଯଁ ଅବାନ୍ତର ମୁଁ କହୁଛି ନା ତମେ କହୁଛ ?'...'ନାଇଁ ଆଜ୍ଞା ମୁଁ କହୁଚି'- ଗଜ ନରମି ଗଲା ।

ସୁବୁଦ୍ଧିଏ ମିଳାମିଶା କଳାଭଳି କହିଲେ- 'ନାଇଁ ନାଇଁ ସମସ୍ତେ ଠିକ୍ କହୁଚ । ବୋଇଲା ତୁମି ନାରାୟଣ- ହାମି ନାରାୟଣ । ଇହା ସକଳ ଘଟେ ନାରାୟଣ, ବସନ୍ତି ଅନାଦି କାରଣ ।' ଭାଗବତର ଏ ପଦ ବାପ କ'ଣ ମିଛ ?" ଗଜ ଧାଉଁକିନି ମାଡ଼ିବସିଲା- 'ହେଁ...ମଧୁସୁଦନ ବି ସେଇକଥା କହିଛନ୍ତି !'

ସ୍ୱର୍ଗତ ମଧୁସୂଦନ ଏ ଦେଶର ଗୁରୁ, ଭକ୍ତ କବି ଏବଂ ବର୍ଣ୍ଣବୋଧ ତାଙ୍କର ଏ ଜାତିକୁ ଶ୍ରେଷ୍ଠ ଅବଦାନ । ଆପଣମାନେ ଟିକିଏ ତୁଳନା କରି ଦେଖିଲେ ବିସ୍ମିତ ହେବେ ଯେ, ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ମଧ୍ୟ ବଙ୍ଗାଳି ଜାତିକୁ ବର୍ଣ୍ଣ ଶିଖାଇବା ଲାଗି ଏହିପରି ଏକ ଗ୍ରନ୍ଥ ଲେଖି ତା'ର ନାମ 'ବର୍ଣ୍ଣପରଚୟ' ରଖିଥିଲେ, ମାତ୍ର ମଧୁସୂଦନ ନାମ ଦେଲେ- 'ବର୍ଣ୍ଣବୋଧ' । କାହିଁକି ସେ ଏପରି କଲେ ?

ବର୍ଣ୍ଣମାନେ କ'ଣ ? ଜାତି । ଗୀତା କହନ୍ତି-
'ଚାତୁର୍ବର୍ଣ୍ଣଂ ମୟା ସୃଷ୍ଟଂ ଗୁଣ-କର୍ମ-ବିଭାଗଶଃ'

ଏହି ଚତୁର୍ବର୍ଣ୍ଣ ଉକ୍ତ ପୁସ୍ତକକୁ ପଢିଲେ ବୋଧ ହୋଇଯିବେ । ଖାଲି ସେତିକି ନୁହେଁ ବୋଧାଶୋଧା, କି ବିଜ୍ଞ ମଧ୍ୟ ହୋଇ ପାରିବେ । ସେଥିରେ ସେ ଆମକୁ ଅକ୍ଷର ଶିଖାଇଛନ୍ତି, ଧର୍ମ ଶିଖାଇଛନ୍ତି, ଇତିହାସ, ଦର୍ଶନ, ପାରିବାରିକ ଜୀବନାଦର୍ଶ, ପୋଷ୍ୟ ଜୀବନଙ୍କ ପ୍ରତି ଦୟା ଏବଂ ଆଦର, ପ୍ରକୃତି ପ୍ରେମ ଇତ୍ୟାଦି ସବୁ ଶିଖାଇଛନ୍ତି ।

ବୋଇଲା- 'ବନେବନେ ନ ଗଜେନ୍ଦ୍ର- ମୌକ୍ତିକଂ ନ ଗଜେ ଗଜେ,' ସବୁ ବଣରେ ହାତୀ ନ ଥାନ୍ତି କି ସବୁ ହାତୀଙ୍କ କପାଳରେ ଗଜମୁକୁତା ନ ଥାଏ । ସେମିତି ସଭିଙ୍କଠାରେ କବିତ୍ୱ ଶକ୍ତି ନ ଥାଏ କି ସବୁ କବିଙ୍କର ସବୁ ପଦରେ ମର୍ମ ନ ଥାଏ । ପୁଣି ମର୍ମ ଥିଲେହେଁ ସମସ୍ତିଙ୍କି ତାହା ଜଣା ନ ଥାଏ । ସୁବୁଦ୍ଧିଏ କହିଲେ-

ପୋଥି ପଢ଼ି ପଢ଼ି ଧୋତି ଉଡ଼େ
ମରମ ନଜାନେ କୋଇ
ମରମ ଜାନେ ଯୋଇ ବେଟା
ଆପେ ନିରଞ୍ଜନ ସେ ହିଁ ।

ଗଜ ତା'ର ଖୁସିଟାକୁ ଆଖି, ଓଠ ଓ ଅଙ୍ଗପ୍ରତ୍ୟଙ୍ଗରେ ଫୁଟାଇ ଦ୍ୱିଗୁଣ ପୁଲକରେ କହିଲା- 'ବିଦ୍ୱନ୍‌ମଣ୍ଡଳି, ଆପଣମାନଙ୍କୁ ମୋର ବିନମ୍ର ନିବେଦନ ଆପଣମାନେ ବର୍ଣ୍ଣବୋଧକୁ ଆଉଥରେ ଲେଖା ପଢ଼ନ୍ତୁ ଏବଂ କବିଙ୍କୁ ଏହିପରି ଭାବରେ ବୁଝାନ୍ତୁ; କିନ୍ତୁ ଭୁଲ ବୁଝନ୍ତୁ ନାହିଁ । ମୁଁ ତ କେବଳ ତାର ଗୋଟିଏ ମାତ୍ର ପଦର ୯ ପ୍ରକାର ଅର୍ଥ କଲି; ଏଥିରୁ ଆହୁରି ଅନେକ ଅର୍ଥ ବାହାରିବ । ଏଥିରେ ଓଡ଼ିଶାର ମିଳିତ ମନ୍ତ୍ରୀମଣ୍ଡଳ ହେବାକଥା କବି ଲେଖିଥିଲେ, ଭାରତକୁ ପାକିସ୍ଥାନ ଆକ୍ରମଣ କରି ହାରିଯିବା ଇତ୍ୟାଦି ଯାବତୀୟ ବିଷୟ ସୂଚାଇ ଥିଲେ; କିନ୍ତୁ ପ୍ରକୃତ ଅବଗାହୀଙ୍କ ଅଭାବରୁ ଏସବୁ ଅବୋଧ୍ୟ ଅନାଲୋଚ୍ୟ ହୋଇ ରହି ଯାଉଅଛି । ମତ୍‌ପ୍ରଣୀତ ଅଇଲାଣି ବିଲାଇର ଏହି ନବାର୍ଥବୋଧିନୀ ଟୀକା ପ୍ରକାଶିତ ହେଲେ ଏଦିଗରେ ଲୋକଙ୍କର ଧାରଣା ବଦଳିବ ବୋଲି ମୁଁ ଆଶା କରୁଛି । ଖାଲି ଏତିକି ନୁହେଁ ଏହା ଇଂରାଜୀ ଭାଷାରେ ଅନୂଦିତ ହେଲେ କବିଙ୍କର ନୋବେଲ ପ୍ରାଇଜ୍ ପାଇବାର ବାଟ ଖୋଲିଯିବ ବୋଲି ମୋର ବିଶ୍ୱାସ । ମାତ୍ର ଏ ଦେଶରେ ଜ୍ଞାନର ଆଦରନାହିଁ, ପ୍ରତିଭାର ପୂଜାନାହିଁ । ତିଆଡ଼ିଏ ଶତପଥୀଏ, ସୁବୁଦ୍ଧିଏ, ନନ୍ଦେ ଆଁ କରି ଅନେଇଁଛନ୍ତି; ପ୍ରୌଢ଼ ଶିକ୍ଷାୟତନର ସଂଗଠକ ଅଧ୍ୟକ୍ଷ ଗଜେନ୍ଦ୍ର ଚଳାଇଛି ଓଜସ୍ୱିନୀ ଭାଷଣ ! !







## ଭଣ୍ଡାରି ହାତରେ

'ଭଣ୍ଡାର ହାତରେ ପଡ଼ିଛି ଚୁଟି ଯେଣିକି ବୋଇଲେ ତେଣିକି ଉଠି ।'- ଢ଼ଗଟି ବହୁ ଅର୍ଥରେ ପ୍ରୟୋଗ ହୁଏ । ଭୋଅଟ ଦେଇ ଜିତେଇ ସାରିବା ପରେ ଲୋକପ୍ରତିନିଧିଙ୍କୁ ଛିଗୁଳାଇବା ପାଇଁ ମଧ୍ୟ ଏ କଥା କୁହାଯାଏ । କିନ୍ତୁ ଆଖି ଛୁଇଁ କହୁଛି- ମୁଁ ଯାକୁ ଠିକ୍ ଅର୍ଥରେ ଗ୍ରହଣ ଓ ବଖାଣ କରୁଛି ।

ଗ୍ରହଣଟା କ'ଣ କି ? ରାହୁ ବୋଲି ଗୋଟାଏ ଜିନିଷ କି ମଣିଷ ବା ରାକ୍ଷସ ଯାହା ହେଉ ଚନ୍ଦ୍ର ବୋଲି ଆକାଶରେ ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ଗଡୁଥିବା ଗୋଲିଆ ଉଜ୍ୱଳ ପଦାର୍ଥକୁ ଆଁ ବାଟେ ପୂରାଇ ତଣ୍ଟିବାଟେ ନିକାଲି ଦିଏ । ଯେ' ହେଲା ଗ୍ରହଣ । ବଖାଣଟା ତାର ଠିକ୍ ଓଲଟା । ଭାବଟାକୁ ତଣ୍ଟିବାଟେ ଉଠାଇ ଆଁ ବାଟେ ବାହାର କରିଦେବା ।

ମୋ' ଭାବଟା ଛାତି ଭିତରେ ଉବୁଟୁବୁ ଉଛୁଳି ଉପରକୁ ଉବୁକେଇବା ଆଗରୁ ତା'ର ହେତୁଟା ଖପୁରି ଉପରେ ଡେଉଁଥିଲା ।

ଯାହାର ହେତା (ଜାଗିରି) ଖିଆ ଭଣ୍ଡାରି ଥିବେ ତାଙ୍କ କଥା ମୁଁ କହୁନାଇଁ । ସେମାନଙ୍କ ଦୁଆରକୁ ହୁଏତ ବିଚରା ଭଣ୍ଡାରିମାନେ ମୁଠି ଯାକି ଖିଅର ଇତ୍ୟାଦି କରିବାକୁ ପାଳି ଅନୁସାରେ ଆସୁଥିବେ । କିନ୍ତୁ ଆମେ ଯେଉଁ ବିଚରା ଚାକିରିଆ ବାବୁଟିଏମାନ ଅଛୁ, ପୁଣି ସହର ନାମଧେୟ ସ୍ଥାନମାନଙ୍କରେ ଥୁଆ ହୋଇଛୁ ଆମମାନଙ୍କ ଦଶା ଗାଆଣି ଗାଇଲେ ସରିବ କି ନାଇଁ ଦୁସୁରା କଥା ବରଂ ବଢ଼ି ବଢ଼ି ଯିବ । ଏଠେଇ ସଦାବେଳେ 'ଦାସଙ୍କ ଉପରେ ଘୋଡ଼ା' ।

ଆମେ ବାବୁଟିମାନ ନିହାତି ବାଳ ଫାଳ ବଢ଼ିଗଲେ ଅନନ୍ୟୋପାୟ ହୋଇ ସକାଳୁ ସାଇକେଲ ଖଣ୍ଡିଏ ମାନ ଧରି କି ସ୍ୱ ସ୍ୱ ଯାନ ଅଥବା ପଦଯୁଗଳଙ୍କୁ ଚଳମାନ କରି ସାଲୁନ ନାମକ ସ୍ଥାନକୁ ଯାଉ । ସେଠାରେ କାକୁସ୍ଥ ହୋଇ ଲାଇନରେ ଅପେକ୍ଷା କରୁ । ସବୁଆଡ଼େ ସିନା ବେଲାଇନ ଏଠାରେ କିନ୍ତୁ ଲାଇନ୍ ଉପରେ କାମ । ପାଳି ପଡିଲେ ବୋଦା ହାଣ ମୁହଁକୁ ଗଲାପରି ଗୋଟାଏ ଡେଙ୍ଗା ଚଉକି ଉପରକୁ ଉଠୁ । ସେଠି କିଛି ସମୟ ବାରିକ ତାଙ୍କର ଅଫିସିଆଲ ନାମ କାରିଗର ବା ସାଲୁନ ମାଲିକ ଯାହା ହୋଇଥାଉ; ତାଙ୍କରି ହୁକୁମରେ ବିଚରା ମୁଣ୍ଡଟିକୁ ଅସହାୟ ଭାବରେ ଛାଡ଼ିଦେଉ । ତା'ପରେ ସେ ଶସ୍ତ୍ର ପାଣି ହୋଇ ମୁଣ୍ଡକୁ 'ଉପରକୁ ଟେକ' 'ତଳକୁ କର' 'କରେଇ କରି ରଖ' 'ଏମିତି କର' 'ସେମିତି କର' ଆଦି ବହୁବିଧ ନିଦେଶ ଦିଅନ୍ତି । ତା' ପରେ ଦାଢ଼ି କାଟିବା କାମଟା ଆଗରୁ ସେଫ୍‌ଟିରେଜରରେ ବଢାଇଦେଇ ଯାଇଥିଲେ ରକ୍ଷା । ନୋହିଲେ ସିଏ ବି ଗୋଟାଏ ପାଲା ।

ଏ ଯୋଉ ନାପିତ ମହାଶୟଙ୍କ ନିର୍ଦ୍ଦେଶ, ଏକୁ ମୋର ହାଲ ଡର । କିନ୍ତୁ କରାଯିବ କ'ଣ ? ଯେତେହେଲେ ବି ମାସେ ଦି ମାସରେ ଥରେ ଅଧେ ନ ଗଲେ ନ ହୁଏ । କିନ୍ତୁ ସେଠାରେ ଗୋଟିଏ ଓଳି ବିତାଇ ଏ ଦଣ୍ଡ ଭୋଗିବା ବେଳେ ଭାବୁଥାଏ, ଏଣିକି ଜଟ ରଖିବି ପଛେ ଏଠିକି ଆସିବିନି । ହାୟ ଜଟିଆ ବାବାଜି, ତୁମେମାନେ କେଡ଼େ ଚତୁର । ଅବଧୂତ କେତେ କାହାଠାରୁ କେତେ କେତେ କଥା ଶିଖିଲେ; ମୁଁ ହତଭାଗା ତୁମଠାରୁ ଏତକ ବି ଶିଖି ପାରିଲି ନାହିଁ ।

ପୁଣି ଭଗବାନଙ୍କୁ ଡାକେ- ପ୍ରଭୁ ତୁମେ ତ ମୋତେ ଅନେକ କଥା ଦେଇ ନାହଁ । ଯଥା- ମୁଣ୍ଡଭିତରେ ବୁଦ୍ଧି ବୋଲି ଯେଉଁ ଦିବ୍ୟ ବସ୍ତୁଟିଥାଏ, ପୁଣି କପାଳରେ ସୌଭାଗ୍ୟ ବୋଲି ତୁମର ଯେଉଁ ଲଲାଟ ଲିଖନ ଥାଏ ...ଇତ୍ୟାଦି । ତେବେ ମୁଣ୍ଡରେ ଏଇ ବାଳ ପୁଞ୍ଜାକ କିଆଁ ଦେଲ ?... ଯାହାତ କଲ କଲ ଏଥର ମତେ ଚନ୍ଦା କରିଦିଅ । ତାହା ହେଲେ ଭଣ୍ଡାରି ଦାଉରୁ ରକ୍ଷା ପାଇବି । ତା' ଛଡ଼ା ଗୋଟାଏ ବୋଧାଶୋଧା ଲୋକ ଭଳିଆ ବି ଦିଶିବି । ପୁଣି ସାମନା କ୍ୟାଲେଣ୍ଡରରେ କୃଷ୍ଣଚନ୍ଦ୍ରଙ୍କ ଚିତ୍ର ଦେଖେ । ଭାବେ, 'ପ୍ରଭୋ ମୁଁ ତୁମର ଆଜିଯାଏ ଯେତେ ଫଟୋ ଦେଖିଲି, କେଉଁଥିରେ ତୁମର ଗାଲରେ ଟିକିଏ ଦାଢ଼ି କିମ୍ବା ନାକ ତଳେ ନିଶ ବକଟେ ଦେଖିଲିନି ତ ! ତୁମେ କ'ଣ ନିତି ଦି'ଓଳି ଖିଅର ହୁଅ ? ସେମିତି ବି ତ ମାଲୁମ ହେଉନି । ତୁମଠାରେ ସେ ପଦାର୍ଥ ଉଠେଇନାଇଁ ନା କଣ ? ହେଲେ, ମୋତେ ଏ ଦଣ୍ଡ ଦେଲ କାହିଁକି ପ୍ରଭୁ ! ମୋ ପୌରୁଷ ପଛେ ଗାଧୋଇ ଯାଉ ମୋ ମୁହଁକୁ ତୁମରି ମୁହଁ ଭଳିଆ ଅଜାତଶ୍ମଶ୍ରୁ ଏବଂ ମୁଣ୍ଡକୁ ଶଙ୍କରାଚାର୍ଯ୍ୟଙ୍କ ମୁଣ୍ଡ ଭଳିଆ ଚିର କାଳ ନଣ୍ଡା କରି ରଖ କି ଚନ୍ଦା କରିଦିଅ । ଆଉ ଏ ଯମ ଯନ୍ତ୍ରଣା ଦିଅନାହିଁ !' ଭଗବାନ ଶୁଣିଲେ ନାହିଁ ।

ତା' ପରେ ମୁଁ ମୋ ବାଟ ଧରିନେଲି । ଦାଢି ଓ ବାଳ ଛାଡ଼ିଲି ।
କିଏ କେତେ ପ୍ରକାରେ ପଚାରିଲେ । କିଏ ଗାମୁଛା ହଜେଇବା, ସାଳ ହଜେଇବା କାହାଣୀ ଶୁଣାଇଲେ । କିଏ ହତାଶ ପ୍ରେମିକ ବୋଲି ଅପବାଦ ଦେଲେ । କିଏ କେତେ କୁହା ରଚନା କରିଲେ ! ଶେଷରେ ଦ୍ୱିତୀୟ ପନ୍ଥା ଧରିଲି ।
ଏକାଥରକେ ଲଣ୍ଡା ହୋଇ ପଇଲେ ଛ' ମାସ ଚାଲିଯିବ ବିଚାରି, ବାରିକ ବାବୁଙ୍କୁ ଯାଇ କହିଲି- 'ବାବୁ ମୋତେ ଲଣ୍ଡା କରିଦିଅ । ଏଣିକି ତୁମକୁ ପ୍ରତି ମାସରେ ବିରକ୍ତ ନ କରି ଛ' ମାସରେ ଥରେ ବ୍ୟସ୍ତ କରିବି । ସେ ବି ସେପରି ନୁହେଁ; ଖୁର ଧରିବ ତ' ଦେବ ଚାଛି ! ସେ ଉଁ ଚୁଁ ହୋଇ ଶେଷରେ ଖୁର ଚଳାଇ ଲଣ୍ଡା କରିଦେଲେ ।
ତା'ପରେ ଯିଏ ଦେଖିଲା ଚାହିଁଲା । ବନ୍ଧୁ ବାନ୍ଧବମାନେ ସମ ବେଦନା ଜଣାଇଲା ପରି ମୁହଁ କରି ଅଥବା ବିସ୍ମୟରେ ନୋହିଲେ ସାଶ୍ରୁ ଲୋଚନରେ ପଚାରିଲେ- 'କାହାର କ'ଣ ହେଲା ?' ମୁଁ ହୁଏତ ବେଳେ ବେଳେ ଥଟ୍ଟାରେ କହିଲି ବାଗ୍‌ଦାଦର ସେହି ଲୋକପ୍ରିୟ କାହାଣୀ- 'ଗରିବ ହୋସେନ ମରିଗଲା' । ଜାଣି ନ ଜାଣିଲା ପରି ପ୍ରଶ୍ନ ଆସିଲା 'ତେମେ କିଆଁ ନଣ୍ଡାହେଲ ?' ଯୁବକ ବନ୍ଧୁମାନେ ଆପେ ଆପେ ଉତ୍ତର ଯୋଗାଡ଼ କରିନେଇ ସମ୍ଭାବନାତ୍ମକ ପ୍ରଶ୍ନ ପଚାରିଲେ, 'ଡାଣ୍ଡ୍‌ରଫ୍ ?! ରୂପି ହେଲା କି ? ବାଳ ଉପୁଡୁଛି ?'... ଆଉ କିଏ କେମିତି ପଚାରିଲେ- 'କ'ଣ ପୁଅ-ଉକୁଣି ଦେଲା କି ?'- ଶେଷୋକ୍ତ ପ୍ରଶ୍ନ ବଡ଼ ମର୍ମନ୍ତୁଦ । ପିଲା ଦିନେ ସିନା କାଛୁ ଉଠୁଥିଲା; ଉକୁଣି ହେଉଥିଲା । ଏ ବୟସରେ କ'ଣ ସେଗୁରା ହେବ । କୈଫିୟତ୍ ଦେଇ ଦେଇ ବିରକ୍ତ ଲାଗିଲା । ଗତ୍ୟନ୍ତର ପାଇ ପାରିଲିନି ।
ଏବେ ପୁଣି ସେଇ ପୁରୁଣା କଥା । ମାସକେ ଥରେ । କୌଣସି ଗୋଟିଏ ରବିବାର ଦିନ 'ଭଣ୍ଡାରି ହାତରେ ପଡୁଛି ଚୁଟି..... ।'







## ଠେଙ୍ଗୁଣି

'ଜଳକୁ କଣ୍ଟେ ଶତ୍ରୁକୁ ଆଣ୍ଟେ ସଙ୍ଗେ ହୋଇଥାଏ ଜଣେ
ହୋଇଥାଉ ପଛେ ଆମ୍ଭ ଡିମ୍ବିରି ତାକୁ ନ ଛାଡ଼ିବ କ୍ଷଣେ'

ବାଇଆ ହେଲ ? ବୁଦ୍ଧି ବାମ ନହେଲେ ଏକୁ ଛାଡ଼େ କିଏ ? 'ଇୟେ କଣ ଛାଡ଼ିବା ଜିନିଷ ନା ଛଡ଼େଇ ହବା ଦରବ ? କେଉଁ ଦିଅଁ ଦେବତା ଯା ଲାଖି ହେବେ ନା ! ଇୟେ ଦେବତା ଟିକି !'

ଦେବତା ? ତାଙ୍କଠାରୁ ଆଉରି ପ୍ରିୟ- ଆହୁରି ଶ୍ରଦ୍ଧେୟ- ତାଙ୍କ ଉପରେ ମୁଠୁଣିଏ । ଯେମିତି ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରଦ୍ଧାନାମ 'ଜଗା' ପୁଣି ସେଇ ଅନୁସାରେ ପ୍ରିୟତମ ପୁଅର ନାଁ ଦିଆ ଯାଇଥିଲା ତାହା ସ୍ନେହାଧିକ୍ୟରେ ହୋଇଯାଏ- 'ଜଗୁଲି', ସେହିପରି ଏହି, ପରମଶ୍ରଦ୍ଧେୟ ବସ୍ତୁଟିର ପ୍ରିୟନାମ 'ଠେଙ୍ଗା' ଏବଂ ପ୍ରିୟତମ ନାମ 'ଠେଙ୍ଗୁଣି' । ପୁଣି ସେଇଥିରୁ ସୃଷ୍ଟି ହୋଇଛି ସେହି ଭୀମକାନ୍ତ ଶବ୍ଦ- 'ଠେଙ୍ଗେଇବା' ।

ଅହୋ ! ଏକାକ୍ଷର ଯେ ଓଁ ତାହା- କୁଆଡ଼େ ବୀଜମନ୍ତ୍ର । କେଡ଼େ ପବିତ୍ର ସେ ଅକ୍ଷର, ସବୁ ପ୍ରଧାନ ପୁରାଣ, ଗୀତା ବେଦର ଆଦ୍ୟରେ ସେଇ ଓଁ । କିନ୍ତୁ ଏଇ ଯେ ଚାରି ଅକ୍ଷର ଠେଙ୍ଗେଇବା, ଇଏ ସେଇ ଏକାକ୍ଷର ଗୋସାଇଁ ! ଯେପରି ଓଁ ଉଚ୍ଚାରଣ କଲେ ପାପତାପ ଦୂରିତ ଇତ୍ୟାଦି ଦୂରେଇ ଯାଏ, ଯମ ପାଖ ମାଡ଼େ ନାଇଁ; 'ଠେଙ୍ଗେଇବି' କହି ଟିକିଏ ହୁଙ୍କାରି ଦେଲେ ପାଗଳା ବିଲୁଆ, କାମୁଡ଼ା କୁତି, କଳିହୁଡ଼ି ବୁଢ଼ୀଠାରୁ ଆରମ୍ଭ କରି ବିଲ ଜବରଦଖଲ କରିବାକୁ ହେଣ୍ଡାଲୁ ଥିବା କୁହାଳିଆ ଗୁଣ୍ଡାମାନେ ବି ଦି' ଦି' ପାହୁଣ୍ଡ

ପଛେଇ ଯା'ନ୍ତି ବା ମାନେ ମାନେ ଭାଗିଯା'ନ୍ତି । କିନ୍ତୁ ଗୋଟିଏ କଥା- 'ନାୟମାତ୍ମା ବଳହୀନେନ ଲଭ୍ୟଃ ।' ଟିକିଏ ପରିଷ୍କାର କରି କହିଲେ-ନାୟଂ ଠେଙ୍ଗା ବଳହୀନେନ ଲଭ୍ୟଃ । ଏଇ ଠେଙ୍ଗାକୁ ଆୟତ୍ତରେ ରଖି ଉପଯୁକ୍ତ ସମୟରେ ବିନିଯୋଗ ମନ୍ତ୍ର ଠେଙ୍ଗେଇବାର ପ୍ରୟୋଗ ଶକ୍ତି ସାପେକ୍ଷ । ଦୁର୍ବଳସ୍ୟ କୁତଃ ଠେଙ୍ଗା ? ଯେଉଁଠି ସବୁ ଅକଲ ଗୁଡୁମ୍ ସେଇଠି-ହେ ଠେଙ୍ଗାଦେବ-'ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ, ତ୍ୱମେବ ସର୍ବ ମମ ଦଣ୍ଡଦେବ ।'

ଆଛା କହିଲେ ଭଲା;- ସବୁ ମନ୍ତ୍ର କ'ଣ ସବୁରି ହାତରେ ସମାନ ଭାବେ କାଟୁକରେ ? ସବୁ ମୁନିଙ୍କ ହାତରେ ଲେଖନୀ କ'ଣ ଏକାଭଳି କରାମତି ଦେଖାଏ ? ଗ୍ରହମାନେ କ'ଣ ରାଶି ଚକ୍ରରେ ଯେ କୌଣସି ସ୍ଥାନରେ ସମଭାବରେ ବଳଶାଳୀ ହୁଅନ୍ତି ? ଆଉ ପୁଣି ଭାବିଲେ ଦେଖି- ଠାକୁର ଠାକୁରାଣୀଟିଏମାନ ପ୍ରତିଟି ମୂର୍ତ୍ତିରେ ସମାନ ପ୍ରତାପ ଘେନି ବିରାଜମାନ କରୁଥିଲେ ବିପଦ-ଆପଦ ବେଳେ ଏତେଗୁଡ଼ାଏ ଦିଅଁ ଦେବତାଙ୍କୁ ମାନସିକ କରିବା କଅଣ ଜରୁରତ୍ ପଡ଼ନ୍ତା ?. . . ଆମ ଠେଙ୍ଗା ଦେବଙ୍କ କଥା ସେହିପରି ଅଟେ । ସବୁ ସ୍ଥାନରେ ସବୁବେଳେ, ସମସ୍ତଙ୍କ ହାତରେ - ଏ ମହାଶୟ ସମାନ କରାମତି ଦେଖାଇ ପାରନ୍ତି ନାହିଁ ।

ଏହା ତ ଲୁଚାଛପା କଥା ନୁହେଁ । ମହାପ୍ରଭୁ କେଉଁ ମୂର୍ତ୍ତି ଭିତରେ ପଶି ଛପନ ପଉଟି ଭୋଗ ମହାନ ଆଡ଼ମ୍ବରରେ ଖା'ନ୍ତି ତ କେଉଁ ମୂର୍ତ୍ତି ଭିତରେ ବସି ଉଖୁଡ଼ା ପୋଷେକୁ - ଅନେଇଥାନ୍ତି । ଆଉ ମଧ୍ୟ ଠାକୁରାଣୀ କେଉଁ ବରଗଛ ମୂଳେ 'ମୃତ୍ତିକାଶଶ୍ୱଗଜାରୁଢା ବନ୍ଧ୍ୟାୟାଂ ପୁତ୍ର ଦାୟିନୀ ବାଡ଼ି ସଂହାରିଣୀ ଦେବୀ...' ରୂପେ ପଥର ଢିମାରେ ପଶି ଗୁଡ଼ପାଣି ମୁନ୍ଦାଏ ଚେଣ୍ଟିବା ଲାଗି ଚାହିଁ ବସିଥାନ୍ତି ତ କେଉଁଠି ଦିବ୍ୟସୁନ୍ଦର ମନ୍ଦିର ମଧ୍ୟରେ ଚିନ୍ମୟୀ ମୂର୍ତ୍ତିର ଅନ୍ତରାଳରେ ବିରାଜମାନା ହୋଇ ବିସ୍ଫାରିତ ଅଥବା ବରଦା ନେତ୍ରରେ ଚାହିଁ ଥାଆନ୍ତି । ସ୍ଥାନେ ସ୍ଥାନେ ଜଗଦମ୍ବାଙ୍କର ତରାଟିଥିବା ଆଖି ଲହ ଲହ ଜିହ୍ୱା ଦେଖି ମନୁଷ୍ୟଶରୀରର 'ପିଳେହି' ନାମକ ବସ୍ତୁଟି ପାଣି ହୋଇ ତହିଁ ଉତ୍ତାରେ ବାମ୍ଫ ହୋଇଯିବାକୁ ବସେ । ଶୃଣୁ ସଖେ, ସେହିପରି-ପିଆଶାଳ, ବାଉଁଶ, ବେତ, ଭଇଁଚ, ଆମ୍ବ, ଡିମିରି ସବୁଥିରେ ଠେଙ୍ଗା'ଙ୍କର ଠେଙ୍ଗାତ୍ୱ ସମଭାବରେ ପ୍ରକାଶିତ ପ୍ରତିଫଳିତ ନ ହୋଇ ତହିଁରେ ତାରତମ୍ୟ ଘଟେ । ଏଥିରେ କିଛି ଅବୁଝା ଅଥବା ଅଯୌକ୍ତିକତା ରହିଲା କି ?

-'ଦନେଇ ତୁମେଇ ନାଁ କରିଚ, ଅଭିନନ୍ଦନ ବନ୍ଧୁ । ଭଗବାନ ଶ୍ରୀକୃଷ୍ଣ ଯେପରି ଚକ୍ର ଧରି ସମସ୍ତଙ୍କୁ ସାବାଡ଼ କରି ପାରୁଥିଲେ, ତାଙ୍କ ନାଁ ହୋଇଥିଲା ଚକ୍ରଧର, ତୁମେ ସେହିପରି ଜଣେ 'ବୀରବର ଠେଙ୍ଗାଧର' । ହେ ଅଜ୍ଞାତ ବୀରବର, ତମରି ନାଁ ଅନୁସାରେ ଏବେ

'ଦନେଇ ଠେଙ୍ଗୁଣି', ପ୍ରବାଦଟି ପ୍ରଚଳିତ । ଏକଦା ଗୋଟିଏ ପ୍ରସିଦ୍ଧ ସମ୍ବାଦପତ୍ରରେ ସମ୍ପାଦକୀୟ ବାହାରିଥିଲା- 'ମୋରାରଜୀଙ୍କ ଦନେଇ ଠେଙ୍ଗୁଣି' । ସେତେବେଳେ ମୋରାରଜୀ ଦେଶାଇ ଥିଲେ ଭାରତର ପ୍ରଧାନମନ୍ତ୍ରୀ ତମେ କୋଉ ଯୁଗର ଅଖ୍ୟାତ ପୁର ଅଥବା ପଲ୍ଲୀର ଦନେଇ ପୁଣି ଆସି ଭେଟିଲ ଏ ଯୁଗର ମୋରାଜୀଙ୍କ ପାଖରେ, ସାବାସ୍ ଦୋସ୍ତ ।

ଯେପରି ଲୋକ 'ପୁସିଙ୍ଗ୍' ହେଲେ ବହୁସ୍ଥାନରେ ପଶି ପ୍ରଭାବ ଅର୍ଜି ତାକୁ ଖଟାଇପାରେ; ଆଧିକାରିକ ବ୍ୟକ୍ତିଙ୍କଠାରୁ 'ବ୍ୟାକିଙ୍ଗ୍' ପାଇଲେ ହାବେଳି ଅଥବା ଚେଙ୍ଗ ବାଣପରି ଆଖି ଝଲସାଇ ଉପରକୁ ଚମକିଯାଏ, ସେହିପରି ମହାତ୍ମା ଠେଙ୍ଗୁଣି ଚନ୍ଦ୍ରଙ୍କର 'ବିଟିଙ୍ଗ୍' ପାଇଲେ ବହୁ ଅଣାୟତ ଲୋକ ଆୟତ୍ତକୁ ଆସନ୍ତି । କେଡ଼େ କେଡ଼େ ଫୁଟାଣିଆଙ୍କ ତୁଣ୍ଡରୁ ବାହାରି ପଡେ - 'ମାରନା ମୁଁ ମଲିଣି ।'

ମୂର୍ତ୍ତି-ମନ୍ଦିର-ପୂଜକ-ପ୍ରତିଷ୍ଠାତା ଓ ଭକ୍ତଙ୍କୁ ଘେନି ଦେବତା ! ନିର୍ମାଣ ସାମଗ୍ରୀ ନିର୍ମାତାର କୌଶଳ ଏବଂ ସର୍ବୋପରି ଧାରଣ କରିଥିବା ବ୍ୟକ୍ତିର ବ୍ୟକ୍ତିତ୍ୱ ଓ ଶକ୍ତି ଘେନି ଠେଙ୍ଗା ଦେବତାଙ୍କର ପ୍ରତିଷ୍ଠା ଓ କରାମତି । କର ଘେନି କରାମତି । ମଇଁଷିଆଳ ହାତରେ ଚଉକିଦାର ବା ପୁଲିସବାଲାଙ୍କ ହାତରେ ଅଥବା ଅନ୍ଧ ବୁଢାଟିର ହାତରେ ଆମର ମାନ୍ୟବର ଠେଙ୍ଗା ସମାନ କରାମତି ପ୍ରକାଶି ପାରନ୍ତି ନାହିଁ । ସେ ଯେ କୌଣସି ବ୍ୟକ୍ତିର ମୁଣ୍ଡରେ, ହାତରେ, ଗୋଡ଼ରେ, ପିଠିରେ, ଯେକୌଣସି ଅଂଶରେ ବିଜେ କରିପାରିବେ । କିନ୍ତୁ ଏଥିପାଇଁ ବିଜେ କରାଇବା ବ୍ୟକ୍ତି ଦରକାର । ଆହା ଯେଉଁ ମହାମାନ୍ୟ ଠେଙ୍ଗା, ଗୁଣ୍ଡା, ପୁଲିସ୍ ଅଥବା ସେହି ଜାତୀୟ ବ୍ୟକ୍ତିଙ୍କର କରକମଳରେ ଅବତରିଲେ କେଡ଼େ କେଡ଼େ ମୁଣ୍ଡକୁ ଛତୁ କରିପାରନ୍ତି, ସିଏ ପୁଣି ରୋଗିଣା ବା ଦୁର୍ବଳ ଭିକାରିଟିର ହାତରେ କେଡ଼େ ନିରୀହ ଓ ଦୟନୀୟ ଦିଶନ୍ତି ! ପୁଣି ବୁଢା ହାକିମହୁକୁମାଙ୍କ ହାତରେ- ହଲିହଲି ଝୁଲୁଥିବା ବେଳେ ତାଙ୍କର କୁମୁନିଆ ରୂପଟି କେଡ଼େ ନିର୍ମାୟା ନଦିଶେ ଟି ! ଏଥିପାଇଁ କ'ଣ - 'ନ ଧାତୁଃପୂରା କୋବୁଦ୍ଧି ଦୋଃଭୁତ୍ ?' ବିଧାତାଙ୍କ ପାଖରେ କେହି କନ୍‌ସଲ୍‌ଟାଣ୍ଟ କି ଆଡଭାଇଜର୍ ନ ଥିଲେ ?

କହିଛି ଏ ଦେବତାଙ୍କର ଶ୍ରଦ୍ଧା ନାମ ହେଲା 'ଠେଙ୍ଗା' କିନ୍ତୁ ସାଧୁ ନାମ 'ଦଣ୍ଡ', ସରକାରୀ ନାମ ଲାଠି, ଘରୋଇ ନାମ 'ବାଡ଼ି', ଏବଂ ଲୌକିକ ନାମ ତଡ଼ା !'

ଏହି ଦଣ୍ଡ ଦେବଙ୍କୁ ହାତରେ ଧରି ଶଙ୍କରାଚାର୍ଯ୍ୟ ଭାରତ ପରିକ୍ରମା କରିଥିଲେ, ହୁଏନ୍‌ସା ଚୀନରୁ ଆସିଥିଲେ, ବିବେକାନନ୍ଦ ଚିକାଗୋ ଯାଇଥିଲେ, ମହାତ୍ମାଗାନ୍ଧୀ ଦାଣ୍ଡିମାର୍ଚ୍ଚ

କରିଥିଲେ ଏବଂ ବିନୋବା ଭୂଦାନ ପଦଯାତ୍ରା କରିଛନ୍ତି । ପୁଣି ସରକାରୀ କ୍ଷମତାରେ ଏଇ ଦଣ୍ଡ ବା ଠେଙ୍ଗା 'ଲାଠି' ନାମ ଘେନି ବିଦେଶୀ ଓ ଦେଶୀ ଶାସନ ଅମଳରେ କେଢ଼େ କେଢ଼େ ଲୋକଙ୍କ ମୁଣ୍ଡ ଓ ପିଠିରେ ବିଜେ କରିଥିଲେ ଓ କରନ୍ତି । 'ବାଡ଼ି' ନାମରେ କେଢ଼େ କେଢ଼େ ବ୍ୟକ୍ତି ଏହାକୁ ଆଭିଜାତ୍ୟର ସୂଚକ ରୂପରେ ସାଧାରଣତଃ ଆଶ୍ରା କରି ଧରନ୍ତି । ପୁଣି ଏହା ତଡ଼ା ନାମରେ ନ ତଡ଼େ ବା କାହାକୁ ?

ଶ୍ରୀକୃଷ୍ଣ ଯେପରି ନନ୍ଦଙ୍କ ଗାଈଗୋଠ, ଯଶୋଦାଙ୍କ ଦଧି ମନ୍ଥନ ସ୍ଥାନ; ଯମୁନାର ମଞ୍ଜୁଳ କୁଞ୍ଜ-ବନ, କଂସର ରଙ୍ଗସଭା, ପାଣ୍ଡବଙ୍କର ଅନ୍ତଃପୁର, ବିଦୁରଙ୍କ ଆବାସ, ସୁଦାମାଙ୍କ ଭଙ୍ଗା କୁଡ଼ିଆ, କୁରୁକ୍ଷେତ୍ରର ସମରାଙ୍ଗନ ସବୁ ସ୍ଥାନରେ ପ୍ରବେଶ କରି ଆପଣାର ଆଧିପତ୍ୟ ଜାହିର୍ କରିଛନ୍ତି; ତଦ୍ରୂପ ଠେଙ୍ଗୁଣି ମହାରାଜାଙ୍କର ଗତି ସବୁଆଡକୁ ଏବଂ ସ୍ଥିତି ଓ ପ୍ରତିଷ୍ଠା ଯେ କୌଣସି ସ୍ଥାନରେ ଘଟିପାରେ । ଇଏ ଅନ୍ଧାରେ, ଆଲୁଏ ଦିନରେ ରାତିରେ, ରାତିଅଧିଆ ଯେକୌଣସି ସମୟରେ ବିଜେ କରିପାରନ୍ତି । ଏଙ୍କୁଇ ମୁଖ୍ୟ ମାନି ଏକ ଶାସନ ବା ତନ୍ତ୍ର ପ୍ରତିଷ୍ଠା କରାଯାଇପାରେ । ଏପରି ହେଲେ ତାକୁ କୁହାଯାଏ- ଠେଙ୍ଗାର ଶାସନ ବା ଠେଙ୍ଗୁଣିତନ୍ତ୍ର ! ଅବଶ୍ୟ ଏହା ଗଣତନ୍ତ୍ରର ଓଲଟା ଏବଂ ରାଜତନ୍ତ୍ରର ପାଖାପାଖି ! !

ହେ ମାନ୍ୟବର ମହାମାନ୍ୟ ମହାପ୍ରଭୁ ଠେଙ୍ଗା, ଯେଉଁଠି ସକଳ ଅକଲ ଗୁଡୁମ୍, ସେଇଠି-

'ତ୍ୱମେବ ମାତାଶ୍ଚ ପିତା ତ୍ୱମେବ
ତ୍ୱମେବ ବନ୍ଧୁଶ୍ଚ ସଖା ତ୍ୱମେବ
ତ୍ୱମେବ ବୁଦ୍ଧିଂ କଚେରି ତ୍ୱମେବ
ତ୍ୱମେବ ସର୍ବ ମମ ଦଣ୍ଡ ଦେବ ।'

ଓଁ ଶ୍ରୀମଦ୍ ଠେଙ୍ଗା ଦେବାୟ ଜୁହାର । ଥରେ ବା ଏକାଥରକେ ନୁହେଁ, ବାରମ୍ବାର ।





## କୌଶଳ

ଜଣେ ବନ୍ଧୁଙ୍କଠାରୁ ଚିଠିଟିଏ ପାଇଲି । ଚିଠି ଉପରେ ଗୋଟିଏ ଛପାଅଛି, ଥୋଡ଼ ତଳର ଦାଢ଼ି ପରି । ତା' ତଳକୁ ଲେଖା ହୋଇଛି- 'ଯୋଗଃ କର୍ମସୁ କୌଶଳଂ' । ସାଙ୍ଗ ଜଣକ ଗୋଟିଏ ତାଲିମ କେନ୍ଦ୍ରରୁ ଲେଖିଛନ୍ତି । କଥାରେ ଅଛି, 'ଦୁଧ ଉତୁରିଲେ ଚୁଲିରେ ପଶେ, ମଣିଷ ଉତୁରିଲେ ଗାତରେ ପଶନ୍ତି ।' କିନ୍ତୁ ଏଇ ତାଲିମ କେନ୍ଦ୍ରରୁ ଉତୁରିବା (ଉତୀର୍ଣ୍ଣ ହେବା) ପିଲାଏ ଶାସନ ଗାଦିରେ ବସନ୍ତି । ଗାଦିଆସୀନ ହେବା ପରେ ସେମାନେ ଯେଉଁ ପ୍ୟାଡ଼ରେ ସରକାରୀ ପତ୍ର ଲେଖିବେ, ସେଥିରେ ଅଶୋକ ସ୍ତମ୍ଭର ଅଗ୍ରଭାଗ ଛପାତଳେ ଲେଖା ହୋଇଥିବ, 'ସତ୍ୟମେବ ଜୟତେ' । ତେବେ ସତ୍ୟ ସହିତ କୌଶଳ କଥାଟା ଗୋଳାଇ ମିଶେଇ ଭାବିଲା ବେଳକୁ ଆପାତତଃ କେମିତି ଅଡୁଆ ଅଡୁଆ ଲାଗୁଛି । ମେଳକ ଶୁଝାଇବା କଥା ବୁଦ୍ଧିଆଳ ପାଠକଙ୍କ ମୁଣ୍ଡରେ ଲଦି ଦିଆଯାଉ ।

ପିଲାଦିନେ 'ବଉଳା ଗାଈ' ଗାଥାରେ ବଉଳା ଓ ବ୍ୟାଘ୍ରର ସତ୍ୟ କରା କରି ପ୍ରସଙ୍ଗ ଶୁଣିଛୁ । ସେକଥା ଯେ ଆମେ ଏକା ଶୁଣିବାକୁ ଜନମ ହୋଇଥିଲୁ ତାହା ନୁହେଁ । ଆମର ପଢ଼ାଳିମାନେ ବି ଶୁଣିଥିବେ । ସେଥିର ଅନ୍ତିମ ପରିଣତି ହେଲା, ସତ୍ୟମେବ ଜୟତେ । ବୋକା ବାଘଟା ବଉଳାକୁ ନଖାଇ ଛାଡ଼ିଦେଲା ଏବଂ ମଲା । କାଇଁକିନା ବଉଳା ସତ୍ୟରକ୍ଷି ବାଘମୁହଁକୁ ପୁଣି ଲେଉଟି ଆସିଲା ।

କୌଶଳ ବିଷୟରେ ମଧ୍ୟ ଆମେ ଫକୀର ମୋହନଙ୍କ ଆତ୍ମଜୀବନୀରେ ପଢିଚେ । ସେନାପତିଏ କିମିତି ମେଳିଆ ଓ ତାଙ୍କ ନେତା ଧରଣୀଧରଙ୍କ ହାବୁଡ଼ରୁ ଖସି ଆସିଲେ ଓ ମେଳିକୁ ଫସରଫଟେଇ ଦେଲେ ସେ କଥା ପାଠୁଆ ଓଡ଼ିଆ ମାତ୍ରେ ଜାଣନ୍ତି ।

ସତ୍ୟର ଜୟ ପରାଜୟ ବିଷୟକୁ କାଡ ନେଇଯାଉ । କୌଶଳ ବିଷୟଟା କିନ୍ତୁ ଆମେ ଅଙ୍ଗେ ଲିଭେଇଛୁ । କୌଶଳ, ଯାହାକୁ ଇଂରାଜୀରେ ଟ୍ୟାକ୍ଟ କୁହାଯାଏ, ଏହାକୁ 'ସ୍କିଲ୍' କହିଲେ ବି ଏହା ଭିତରେ ଟ୍ୟାକ୍ଟ ରହିଥାଏ । ତା' କରାମତି ନଜାଣେ କିଏ ? କିନ୍ତୁ ସତ୍ୟସଙ୍ଗେ ଇଆର ରାଜଯୋଟକ ପଡ଼ିବାଟା କେମିତି କେମିତି ଲାଗୁଛି । ଆଖି ମିଟିକା ମାରିବା କଥାଟା କାହାରି ଅଜଣା ନୁହ । ସତ୍ୟକୁ ବି ଆଖି ମିଟିକା ମରାଯାଏ । ପାଞ୍ଚଭାଇ ପାଞ୍ଚଠା ହୁଅନ୍ତି । ଭିନେଭାନେ ପ୍ରସଙ୍ଗ କୋଟ କଚେରିଯାଏଁ ଯାଏ । ପୁଣି ଦଶଆଡୁ ଦଶଲୋକ ମିଶି ସମବାୟ କମ୍ପାନୀ ବି ଖୋଲନ୍ତି, ଏମିତି ବି ହୁଏ । ତେଣୁ ସତ୍ୟକୁ ଆଖି ମିଟିକାମାରି କୌଶଳ ସହିତ ତା'ର ମେଳକ ଶୁଝାଇବା ଏହାଠୁଁ ଅସମ୍ଭବ ନୁହେଁ ।

ତେବେ କଥାଏ କହିବି- ମହାଭାରତର ବାବୁ ଯୁଧିଷ୍ଠିର କୁଆଡ଼େ ଭାରି ସତ୍ୟବନ୍ତ ପୁରୁଷଥିଲେ, ଆଉ କୋଉଠି ସେଇ ମହାଭାରତରେ ଲେଖାହୋଇଛି । ପୁଣି ତାଙ୍କ ମାମୁ ପୁଅଭାଇ ଶ୍ରୀକୃଷ୍ଣ ମହାଶୟ ଜଣେ ଓସ୍ତାଦ୍ କୌଶଳୀ ଥିଲେ । ଯୁଜେଷ୍ଟି ଓଗେର୍ ପାଣ୍ଡବମାନେ ସତ୍‌ରେ ଥିଲେ ବୋଲି ଶ୍ରୀକୃଷ୍ଣ ତାଙ୍କ ପଟିଆ ହୋଇ କୁରୁ ପାଣ୍ଡବ ଯୁଦ୍ଧରେ ପାଣ୍ଡବମାନଙ୍କୁ ଜିତେଇ ଦେଲେ ବୋଲି କୁହାଯାଏ । କିନ୍ତୁ ଶ୍ରୀକୃଷ୍ଣ କାହିଁକି ପାଣ୍ଡବଙ୍କ ପଟେ ଥିଲେ, କେମିତି ଜିତେଇଲେ ସେ ପ୍ରସଙ୍ଗ କାହାରି ଅଛପା ନୁହେଁ । ସେ ଜରାସନ୍ଧକୁ ଡରିଗଲେ କି ଅର୍ଜୁନଙ୍କ ସଙ୍ଗେ ଭଉଣୀର ବାହାଘର ପ୍ରସଙ୍ଗ ପକେଇବେ ବୋଲି କେଉଁଥିପାଇଁ ପାଣ୍ଡବଙ୍କ ସାଙ୍ଗ ହୋଇଥିଲେ ସେକଥା ଆମେ କହି ନ ପାରୁ । ତେବେ ଦ୍ରୌପଦୀଙ୍କ ପ୍ରତି ତାଙ୍କର ଟିକିଏ ଦୁର୍ବଳତା ଥିଲା ବୋଲି ଶୁଣାଯାଏ । ଛାଡ଼ ସେଗୁଡ଼ାକ ପାପ କଥା ।

ତେବେ ଯୁଜେଷ୍ଟି ଦେବ ସତିଆ ଥିଲେ ହେଁ ଅଶ୍ୱତ୍‌ଥମା ହତ ନରେବା ଗୁଞ୍ଜରେବା ବୋଲି କହି ବିଚରା ଦ୍ରୋଣଙ୍କ ପରି ସରଳ ବିଶ୍ୱାସୀ ଗୁରୁଙ୍କୁ ମରଣ ମୁହଁକୁ ଠେଲି ଦେଇଥିଲେ । ଏହା କୌଶଳ ଓ ସତ୍ୟର ଗୋଟାଏ ମେଳକ ପ୍ରସଙ୍ଗ । ଏଇ ମିଶାଣରେ କାହା ଭାଗଟା କେତେ, ସେ କଥା ଲୋକେ କହିବେ । ଲେମ୍ବୁ ପଣାରେ ଚିନି ପଡ଼ିନଥାଏ ତା' ନୁହେଁ । ତେବେ ସେ ଲେମ୍ବୁ ପଣା । ତେଣୁ ଏକୁ କୌଶଳ ବା ସତ୍ୟ କୌଣସି ଗୋଟିଏ ନାଁ ଦିଆଯାଇପାରେ । କିନ୍ତୁ ସତ୍ୟ ଓ କୌଶଳର ଆପୋଷ ବୋଲି କ'ଣ କୁହାଯିବ ?

ପୁଣି ଅନେକ ସମୟରେ ନିରବ ରହିଯିବା ମଧ୍ୟ ଏକ କୌଶଳ ବୋଲି କୁହାଯାଏ । ଇଶପ କାହାଣୀ ମାଳାରେ ଗୋଟିଏ କଥା ଅଛି । ହେଟାବାଘ ଥରେ ଠେକୁଆକୁ ଡାକି ପଚାରିଲା- ମୋ' ଦେହଟା ଭାରି ଗନ୍ଧଉଛି; ଠେକୁଆ ବିଚରା କ'ଣ କୌଶଳ ଜାଣେ ? ସେ ସଙ୍ଗେ ସଙ୍ଗେ ଉତ୍ତର ଦେଲା- ହଁ ଆଜ୍ଞା ଭାରି ଗନ୍ଧଉଛି । ବାଘ କହିଲା; 'ତୁ ଭାରି କହନେଓ୍ୱାଲା । ହଇରେ ମୁଁ ଗନ୍ଧଉଛି ? ତୁ କାହିଁକି ମତେ ଗନ୍ଧିଆ ବୋଲ କହିଲୁ ? ମୁଁ

ତତେ ଖାଇଦେବି ।' ବିଚରା ଠେକୁଆ ବାଘ ପେଟକୁ ଗଲା । ତା'ପରେ ସେହି ବାଘ ହରିଣକୁ ଡାକି ପଚାରିଲା- ମୁଁ ଗନ୍ଧଉଛି ନା' ବାସୁଛି । ହରିଣ ଠେକୁଆର ଦଶା ଜାଣେ । ସେ ଅଡୁଆ ଭିତରକୁ ପଶି ନପାରି କହିଲା ଆଜ୍ଞା ଆପଣ ବାସୁଛନ୍ତି । ହେଟାବାଘ କହିଲା- ତୁଟା ଭାରି ଖୁସାମତିଆ । ହଇରେ, ମୁଁ ବାସୁଛି ? ତତେ ମୁଁ ଖାଇଦେବି । ତୁ କାହିଁକି ମତେ ଖୁସାମତି କଲୁ ? ମତେ ବୋକା ଠଉରେଇଚୁ ? ତା' ପରେ ଟାଆକୁ । ହରିଣର ଦଫା ଶେଷ । ତାହାପରେ ପାଳି ପଡ଼ିଲା କୋକିର । ସେ କହିଲା ଆଜ୍ଞା, ଧର୍ମାବତାର; ମୋତେ ଥଣ୍ଡା ହୋଇଛି । ତେଣୁ ଗନ୍ଧ ବାସ୍ନା କିଛି ବାରି ପାରୁନି । ଇଏ ଯଦି କୌଶଳରେ ଖସିଯିବା ହେଲା, ଏଥିରେ କ'ଣ ମିଛ ନାଇଁ ? କୋକିକୁ ଥଣ୍ଡା ହୋଇଥିଲା ବୋଲି କଣ ଡାକ୍ତର ମାଇନା କରି କହିଥିଲା- ନାଁ ତା'ର ଏଇଟା ସତ ବୋଲି କିଛି ପ୍ରମାଣ ଅଛି ? ସେ ମିଛ କଥାଟାଏ କହି ଖସିଗଲା ପରି ଜଳଜଳ ହୋଇ ଦିଶୁ ନାହିଁକି ?

ସତ୍ୟ ବୋଇଲେ ଖାଲି କଥାର ସତ୍ୟ ନୁହେଁ । ଆଚରଣରେ ସତ୍ ବା ସାଧୁ ରହିବ । ତେବେ ଅନାଡ଼ିଙ୍କ ଭଳିଆ ନୁହେଁ । ଏଇଆ ବୁଦ୍ଧିଆଳ ଲୋକେ ଭାବୁଥିବେ । 'ସତ କହିବ, ଅପ୍ରିୟ ସତ କହିବ ନାହିଁ'- ଏମିତି ଗୋଟାଏ କିଛି ଫର୍ମୁଲା ତା' ଭିତରୁ ବାହାର କରିବାକୁ ହେବ । ସତିଆ ହେବ; କୌଶଳୀ ହେବ, କିନ୍ତୁ କୌଶଳୀ ହେବାକୁ ଯାଇ ଫତୁଆ ହେବ ନାହିଁ ।

କିନ୍ତୁ କଥାଟା ଠିକ୍ ଏଇଆ ନୁହେଁ । ପୂର୍ବାପର ସଂଗତି ଘେନି ବିଚାରିଲେ, ବିଷୟଟି ଶ୍ରୀମଦ୍‌ଭଗବତ୍ ଗୀତାର ୨ୟ ଅଧ୍ୟାୟର ୫୦ ନମ୍ବର ଶ୍ଳୋକ । କୃଷ୍ଣଚନ୍ଦ୍ର ବୁଝାଇଛନ୍ତି- ସିଦ୍ଧି ଅସିଦ୍ଧିକୁ ସମାନ ମଣି, ଫଳ ପ୍ରାପ୍ତି ପାଇଁ କାଉଳି ନ ହୋଇ ଯୋଗପାଇଁ ଯୋଗକର । କର୍ମରେ କୌଶଳ ହେଲା ଯୋଗ । ହୁସିଆର ଢଙ୍ଗରେ କୁଶ କାଟି ପାରିବା ବୁଦ୍ଧିରୁ ବାହାରିଚି ଏଇ ଶବ୍ଦଟି । ଏଠି ଏହାର ମୂଳ ମର୍ମଟି ଯାହା ହେଉ, ସେଥିରୁ ଖିଏ ଟାଣି ଆଣି ସେଥିରେ ଇଂରାଜୀ ମିଶାଇ କହିଲେ ଓ ବରଗେ ବୁଝିଲେ- କାମଟିଏ କରିଦେବାର ଏଇ ସ୍କିଲ୍ ବା କୌଶଳ ଟା ସଂସାରର କୁଶଳୀ କରିତ୍‌କର୍ମା ଲୋକେ, ମହାପାତ୍ରମାନେ ଜାଣନ୍ତି । ତଟସ୍ଥ ଜଳକା ମାନଙ୍କ ପାଇଁ... 'ଦୁର୍ଗମ ପଥ ଏ ଭଜନ......'



◆◆◆



## ସିନ୍ଦୂର

ସିନ୍ଦୂର ମାଇପେ ଲଗାନ୍ତି । ସଧବାର ଲକ୍ଷଣ ସିନ୍ଦୂର । ଗାଳିଦେଲେ କହନ୍ତି- 'ତୋ ମଥାର ସିନ୍ଦୂର ନିଭିଯାଉ ।' ଆଶୀର୍ବାଦ ହେଲା- 'ତୋ କପାଳରେ ସିନ୍ଦୂର ବିରାଜୁଥାଉ, କାଚ ବଜର ହେଉ ।' ଠାକୁରାଣୀ ସିନ୍ଦୂର ଲଗାନ୍ତି, ଠାକୁରେ ଚନ୍ଦନ ଲାଗି ହୁଅନ୍ତି । କିନ୍ତୁ ପାଇକମାନେ ବି ତ ସିନ୍ଦୂର ଲଗାନ୍ତି । ମାଇପଙ୍କ କପାଳରୁ ପାଇକଙ୍କ ଭାଲ ପଟକୁ ଯେ ଗଲା କିମିତି ? ପୁଣି ନାରୀ ଅବଳା, ଲଳନା, ଘରଣୀ, ଯିଏ ସକେଇ କାନ୍ଦେ- 'ବଡ଼ ହୀନିମାନ୍ ଝିଅ ଜନମ ଲୋ ବୋଉ ।' ତା' ମଥାର ଜିନିଷ ଦୁର୍ଦ୍ଧର୍ଷ ପୁରୁଷ, ପୁଣି ଯୁଦ୍ଧଭୂମିରେ ପ୍ରଚଣ୍ଡ ବୀରତ୍ୱ ଦେଖାଉଥିବା 'କଳିଯୁଗ ଷଣ୍ଢ, ଝାଡ଼ ପାତିସା ଖଣ୍ଡା' ଯାହାଙ୍କ ମଥାରେ 'ଖୋଲରୀ ପାଗ, ବଇରି ନ ରହଇ ଆଗ' ତାଙ୍କ କପାଳକୁ ଗଲା ବା କାହିଁକି ?

କଥାଏ ଅଛି- ଥରେ କ'ଣ ହେଲା କି, ରାମ ସୀତା ଦୁହେଁ ବନବାସ ବେଳେ ଉଦେଗିରି ପର୍ବତରେ ବସିଥିଲେ । ସେଇଠି ଏକ କାଣ୍ଡ ଘଟିଲା-

'ସୀତାଙ୍କ ଶ୍ରୀଅଙ୍ଗରୁ ଶ୍ରମଝାଳ ଗଳି
ପାଷାଣେ ପଡ଼ନ୍ତେ ଲାଲ ଦିଶିଲା ତକ୍ଷଣି

ତାହା ଦେଖି ଆଶ୍ଚର୍ଯ୍ୟ ହୋଇଲେ ରଘୁନାଥ
ଚାରିଭାଗ କରି ତାହା ବାଣ୍ଟିଲେ ତ୍ୱରିତ
ଭାଗେ ହନୁମାନଙ୍କୁ ଦେଲେ
ଭାଗେ ଚଣ୍ଡି ଚାମୁଣ୍ଡାଙ୍କୁ ଦେଲେ
ଭାଗେ କ୍ଷତ୍ରିଙ୍କୁ ଦେଲେ ।'
(ଉତ୍କଳ ଗାଉଁଲି ଗୀତ)

ସେଥିପାଇଁ ପାଇକ କହେ- 'ଶ୍ରୀରାମ ସୁମରି ସିନ୍ଦୂର ଶିରୀ ଘେନିଲି ଭାଲରେ ।' ସିଏ ଯାହା ହେଉ ଜିନିଷଟି ହେଲା ସୀତାଙ୍କର; ମାନେ ନାରୀର । ଅର୍ଥାତ୍ ଉତ୍ସାହର ଉତ୍ସ ନାରୀ ।

ଏତେବଡ଼ ରାମାୟଣ ଯୁଦ୍ଧ- ଉତ୍ସ ହେଲା ନାରୀ, ମହାଭାରତ ଯୁଦ୍ଧ ପଛରେ ସ୍ୱତ୍ୱ ଦାବୀଟା ଯେତେ ନୁହଁ ଦ୍ରୌପଦୀଙ୍କ ଜୁଡ଼ା ବାନ୍ଧିବା ସେତେ ବଡ଼ ହୋଇ ଦିଶେ । ତିରୋରୀ ଯୁଦ୍ଧର ଆରମ୍ଭଟା ବି ଦରାଣ୍ଡି ବସିଲେ ସଂଯୁକ୍ତା ହରଣରୁ ଆରମ୍ଭ । ପୁରୁଷ ବିଚରା ସିନ୍ଦୂର ଟୋପାଟିଏ ହୋଇ ତାଙ୍କ ମୁଣ୍ଡରେ ଲାଗେ, ହାତରେ ପାଣି କାଚ ରୂପେ ଝୁମୁରୁ ଝୁମୁରୁ ହୁଏ.....ଆହା ବିଚରା ପୁରୁଷ ! ସିଏ ହୁଏତ ପୋଛିଦେଲେ ଲିଭିଯିବ, ଛେଚିଦେଲେ ଭାଙ୍ଗିଯିବ ।

ଏଇ ନାରୀ ପାଇଁ ଇନ୍ଦ୍ର ସହସ୍ରାକ୍ଷ ? ଲଙ୍କା ଧ୍ୱଂସ; ନେପୋଲିୟନ ପରାସ୍ତ, କେତେ କିଏ ବଦ୍‌ନାମ୍ । "ନାରୀଏ କି ନକଲେ ରୁଧିରେ ବାନ୍ଧିଲେ ଜୁଡ଼ା ।" ତଥାପି ପୁରୁଷକୁ ନାରୀ ଉତ୍ସାହିତ କରେ । କାଳିଦାସ ନାରୀପାଇଁ କବି । ଶିବ ଶକ୍ତିଙ୍କ ପାଇଁ ଅମର । ବିଷ୍ଣୁ ଲକ୍ଷ୍ମୀଧର । କାରଣ ଲକ୍ଷ୍ମୀଙ୍କ ହାତରେ ଫାଇନାନ୍‌ସ । ତାଙ୍କୁ ନଧରିଲେ କ୍ଷମତା ଟିକକ କୋଉ ପାଇଟିକି ଆସିବ ? ଯାହାହେଲେ ବି ନାରୀ ଯେମିତି ପୁରୁଷକୁ ମୁଣ୍ଡରେ ସିନ୍ଦୂର କରି ପିନ୍ଧେ, ପୁରୁଷ ସେମିତି ସ୍ତ୍ରୀର ପ୍ରତୀକରୂପେ କିଛି ବ୍ୟବହାର କରେ କି ? ପକେଟରେ "ଫରଗେଟ୍ ମି ନଟ୍" ରୁମାଲ, ହାତରେ ସ୍ତ୍ରୀଙ୍କର ଲେଡିଜ୍ ୱାଚ୍, ଅଥବା ପରିଆଙ୍ଗୁଠିରେ ୱେଡିଙ୍ଗ୍ ରିଙ୍ଗ୍ କେତେଜଣ ବା ପିନ୍ଧନ୍ତି ? ସେଥିପାଇଁ ବାଧ୍ୟ ବାଧକତା କେଉଁ ଶାସ୍ତ୍ରରେ ଅଛି ? ମାଇଚିଆମାନଙ୍କ କଥା ଛାଡ଼ନ୍ତୁ । ସେମାନେ ତ ନାରୀ ନାରୀ ଭାବ, ନାରୀ ଚେହେରା ନାରୀ ମନ ନେଇ ବୁଲନ୍ତି । ତାଙ୍କୁ କିଆଁ ହିସାବକୁ ଆଣିବା ? ଅସଲି ମରଦଙ୍କ କଥା ବିଚାରକୁ ଆସୁ ।

ଯେତେ ଭାବିଲେ ମୁଣ୍ଡ କୁଣ୍ଡାଇଲେ, ଉଁ-ଚୁଁ ହେଲେ କିଛି ତ ପଇଟୁନି । କେତେ କାହାକୁ ପଚାରିଲି- ହଇଏ ତମ ଘଇତାମାଇପଙ୍କର ବନ୍ଧୁନାଇଁ ନା କ'ଣ ? ତମକୁ ସିଏ ବାସିଲା ପରି ମାଲୁମ ପଡୁ ନାହିଁ ତ । ପୁରୁଷପୁଙ୍ଗବ ଚିହିଁକି ଉଠି କହିଲେ ତମ ମୁଣ୍ଡ ବିଗିଡ଼ି ଗଲାଣି

କି ହୋ ! ତୁଣ୍ଡ ହୁଡ଼ି କଥା କହୁଛ ଯେ ? ମୁଁ ଟିକିଏ ସଜାଡ଼ିସୁଜୁଡ଼ି ହୋଇ ରହିଲି, କାହିଁକି ମୋ କଥାଟା କ'ଣ ଫାବୁ ନାହିଁ କି ? ଆମ ମୁରୁଖ ଆଖିକି ଯାହା ଦୁଶିଲା କହିଲୁ ? ତେମେ ଆପଣେ ଏମନ୍ତେ ରାଗ ହେଉଛ କାହିଁକି ? ସେ ଥଣ୍ଡା ପଡ଼ିଲେ...କହିଲେ 'ତମ ମତଲବ, ମାନେ ଅଭିପ୍ରାୟ କ'ଣ ?'

ମୁଁ ବୋଇଲି ତେମେ ଆପଣେ ତମ ଫେମିଲିକି ଭାରି ଭଲପାଅ ବୋଲି ଆମେ ଜାଣୁ । କିନ୍ତୁ ତମ ଫେମିଲି ଯେମିତି ତମକୁ ହାତରେ କାଚ ମୁଣ୍ଡରେ ସିନ୍ଦୂର କରି ପିନ୍ଧିଛନ୍ତି, ତମେ ତାଙ୍କୁ ତ ସେମିତି ପିନ୍ଧିନ ? ଏଥକୁ ଆମେ କଣ ବୁଝିବୁ କହିବା ହେଲେ ? ପୁରୁଷପୁଙ୍ଗବ ଜଣଙ୍କ ଫେଁ କିନା ହସି ଦେଲେ ।' ମୋ ମନ ବି ଟିକିଏ କୁରୁଳି ଉଠିଲା...କଣଟାଏ କହିବେ ପରା !

ସିଏ କହିଲେ ହଇଓ, ଆମେ ପୁରୁଷ ପିଲା, ସ୍ତ୍ରୀ ପିଲାଙ୍କୁ ମୁହଁ ଦେଉନାହିଁ । ସେମାନେ ଦେଖେଇ ହୁଅନ୍ତି । କାହିଁକି ନା ତାଙ୍କର ଅନୁରକ୍ତି ଦେଖେଇ ହେବା କଥା । ତା'ଛଡ଼ା ହିଞ୍ଜଡ଼ା ଲୋକେ କ'ଣ ନାଇଁ କ'ଣ ବୋଲି କହିବେ.....ନ ଜାଇଁଲା ଲୋକେ ବାହାଘର ପ୍ରସ୍ତାବ ଟାଏ ପକାଇ ଦେବେ କି କୋଉଠି କ'ଣଟାଏ ହେବ । ଏଇଥିପାଇଁ ସେମାନେ ସିନ୍ଦୂର କାଚ ପିନ୍ଧନ୍ତି କି କଣ । ହେଲେ ସେ ସୂନ୍ଦରର ହୁନ୍ଦର କଥା ଜଣେଇ ଜଣା । କିନ୍ତୁ ଆମେ କିଛି ନକରୁ ନୁହେଁ । ତେବେ କଣ କରୁ ? ମୁଁ ଆଁ କରି ଅନାଇଲି, ବ୍ରହ୍ମାଙ୍କ ମୁହଁରୁ ବେଦ ଗଳିବ କି ଆଉ ।

ସେ କହି ଚାଲିଲେ....ତାଙ୍କର ନାମ (ସ୍ତ୍ରୀ ନାମ)କୁ ଆମେ ତୁଣ୍ଡରେ ଜପୁ । ଅର୍ଥାତ୍ କଥାପ୍ରସଙ୍ଗରେ କହୁ, ତାଙ୍କ ଗୁଣଗାନ କରୁ । ଅବଶ୍ୟ କେହି କେହି ପୁରୁଷ, ନାମ ନଧରି ଇଏ, ଅମୁକ ମାଆ, ଆମର ସିଏ....ଇମିତି କିଛି କହନ୍ତି । ଯାହାହେଲେ ବି ସ୍ତ୍ରୀଙ୍କ ଗୁଣଗାନ କରିବା ସ୍ୱାମୀର ଧର୍ମ । ଆଉ ତେମେ ତ ଜାଣ 'ଗୁଣ ଘୋଷୁ ଘୋଷୁ ଜ୍ଞାନ ହୋଇଲା ।'

ତୁଣ୍ଡ ତଳକୁ କଣ୍ଠ ଏବଂ ତା' ଉପରକୁ ମୁଣ୍ଡ କି ମନରେ ସଦାବେଳେ ତାଙ୍କର ଅନୁରାଗ କଥାଗୁଡ଼ାକ ପୂରେଇ ଥାଉ....କଣ୍ଠରେ କଣ୍ଠସ୍ଥ କରି ରଖିଥାଉ । ଯଥା ଆମ ଇଏ ଅମୁକ ଦରବଟିକୁ ଭଲ ପାଆନ୍ତି...ସେଇଟିରେ ତାଙ୍କର ଶରଧା ବେଶୀ । କେଉଁଠି କେମିତି ଦେଖିଲେ ସେଇଟିମାନଙ୍କୁ ପକେଟରେ ପୂରେଇ ଆଣୁ । ନାଁ କଅଣ କହୁଛ ? ମୁଁ ମୁଣ୍ଡ ଝୁଙ୍କେଇଲି- ହଁ ନୁହେଁ ଆଉ କ'ଣ ?

ସିଏ ଓଗାଳୁଥାନ୍ତି- କଣ୍ଠ ତଳକୁ କ'ଣ ? ହୃଦୟ...ଛାତି, ଛାତି; କ'ଣ କହୁଛ ? ହଁ ତାଙ୍କ ପ୍ରତି ପ୍ରୀତି, ସ୍ନେହ ଅନୁରାଗ, ଭୀତି, ତାତି, ସବୁକିଛି ଆମେ ତାରି ଭିତରେ ଖୁନ୍ଦି କରି ରଖିଥାଉ । ସେ କଥା କେବଳ ନିଶ୍ୱାସ ପ୍ରଶ୍ୱାସ ରୂପେ ଯାଆ ଆସ କରୁଥିବା ପବନ

ଦେବତା ଅବା ଜାଣୁଥିବେ କି ନାହିଁ । କିନ୍ତୁ ସିଏ ଜାଣନ୍ତି । ଯେମିତି ମନ୍ଦର ପର୍ବତକୁ ଖୁଆ, ବାସୁକିକୁ ଦଉଡ଼ି କରି ଦେବ-ଦାନବଗଣ ସମୁଦ୍ରକୁ ମନ୍ଥି ପକାଇଲେ; ଆମେ ସେମିତି ମୁଣ୍ଡକୁ ଖୁଆ, କାଉଳିବାଉଳିକୁ ଦଉଡ଼ି କରି ଆମ ହୃଦୟସାଗରକୁ ମନ୍ଥିପକାଉ । ସେଥିରୁ ଯେଉଁ ଅନୁରାଗର ଲହୁଣି ବାହାରେ ତାକୁ ମୁହଁରେ ନେସି ହୋଇ ବାହାରକୁ ଜୋକର ଭଳିଆ ଦୁଶିଲେ ବି ତାଙ୍କୁ ଭାରି ଭଲ ଦିଶୁ । ଇଏ ଗଲା ହୃଦୟ.....ତା' ତଳକୁ କ'ଣ, ପେଟ । ଅନ୍ତଲ ହେଉକି ଖାଙ୍କେରା ହେଉ ଆମର ସେହି ପ୍ରିୟତମ ପେଟଟି ତାଙ୍କରି ପାଇଁ । ସିଏ ଯାହା ରାନ୍ଧିକରି ଦେବେ ଭଲ ନାଗୁ ନଲାଗୁ...ଲୁଣିଆ ଦରସିଝା ଯାହାହେଉ ସବୁ ଆଦରରେ ଏଇ ପେଟ ଭିତରେ ରଖିବାକୁ ହୁଏ ।...ତା' ପରେ ଆଉ ବା କ'ଣ କହିବା ? ଛାଡ଼- ସେଇଠୁ ଅଇଲା ଗୋଡ଼ । ଏଇ ଗୋଡ଼ରେ ଆମେ ତାଙ୍କରି ପାଇଁ ଧାଁ ଧପଡ ଯେତେ କରୁ ଆଉ କାହା ପାଇଁ କରୁ କି ? ତମେ କ'ଣ କରୁଥିବ କି ନାହିଁ କେଜାଣି - ମୁଁ କରେନି ! ତେବେ କହିଲ ଦେଖି ତାଳୁରୁ ତଳିପାଯାଏ ସବୁ ତାଙ୍କରି ଭାବ, ଅଭାବ...ପ୍ରୀତ୍ୟର୍ଥେ ଲାଗି ନଥାଏ କି ? ତା' ନହେଲେ ମଥାର ସିନ୍ଦୂର ହାତର କାଚ ଏତେ ଯତ୍ନରେ ସାଙ୍କୁ ଥାନ୍ତା କି ? ଏମନ୍ତ ଉତ୍ତର ଝାଡ଼ିଦେଇ ସେ ମୁଣ୍ଡକୁ କଇଁଚ ମୁଣ୍ଡପରି କିଞ୍ଚିତ୍ ପ୍ରସାରିତ ଓ ସଂଚାଳିତ କରି କହିଲେ- ଭାବିଲ ଭାବିଲ ।

ମୋ ମୁଣ୍ଡରେ ଚେତନା ପଶିଲା । ପାଇଗଲି । ଦେ ମାଇଲି ଏକ 'ଇଉରେକ୍‌କା'ଡ଼ିଆଁ ।

- ୨ -

ଏଥିରେ ପୁଣି ଗୋଟିଏ କାହାଣୀ ଅଛି । ଥରେ ଜଣେ ଭଦ୍ର ମହିଳା ସିନ୍ଦୂର ପିନ୍ଧା ସସ୍‌ପେଣ୍ଡ ରଖିଥିଲେ । ସସ୍‌ପେଣ୍ଡ କିଆଁ ରଖିବେ ହୋ ? ନାଇଁ, କଥାଟା ଦୋସରା । ଢଗ ଅଛି-

ନଈରେ ବାଳିଆ ଚହଟିଲା,
କଜଳସିନ୍ଦୂର ନାଆଲୋ ରାଣ୍ଡି
ପୁଣି ଚାଖିଆ ନେଉଟିଲା ।

ରାଣ୍ଡି ବା ବିଧବାମାନେ ସିନ୍ଦୂର ପିନ୍ଧନ୍ତି ନାହିଁ; ସଧବାମାନଙ୍କରବି ଏଇଟା ହେଲା ମନୋପଲି । ସ୍ୱାମୀ ବାହାରେ ପ୍ରାଣ ହରାଇଥିବା ଖବର ପାଇ ଏଇ ଏଇ ଦରବମାନଙ୍କୁ ବରଜିଥିବା ନାରୀଟିଏ ପୁଣି ସ୍ୱାମୀ ଫେରିଆସିବା ଜାଣିଲେ...ବ୍ୟାପାରର ପୁନରାବୃତ୍ତି କରୁଥିବେ । ହେଲେ ଆଜିକାଲି ଅନେକ ମାଇପେ ତ ଫେସନରେ ସେଗୁଡ଼ା ଛାଡ଼ି ଦେଲେଣି । କାରଣ ଏଇ ସିନ୍ଦୂର ଘେନା ଛାଡ଼ିଦେବାଟା ହିଁ ତାଙ୍କୁ ସୁନ୍ଦର ଦିଶୁଛି ।

ପୁରୁଷ ପିଲା କଳିଯୁଗ ଭେଣ୍ଡା...ଝାଡ଼ ପାତିଶା ଖଣ୍ଡାଠାରୁ ସିନ୍ଦୂରକଲି ଉଠିଗଲାଣି । କାରଣ ତାଙ୍କର ଆଉ ବୀରତ୍ୱ ନାହିଁ...ଦର୍ପ ନାହିଁ । ବୀରପାଇଁ ଯାହା ସୁନ୍ଦର- ରାଜ୍ୟ ଜୟ, କ୍ଷାତ୍ରତେଜ

ସେ ସବୁ ନାହିଁ...ତେବେ ସିନ୍ଦୂରକଲି ବା ରହନ୍ତା କାହିଁକି ? କିନ୍ତୁ ନାରୀଙ୍କଠାରୁ ତ ନାରୀତ୍ୱ (ନାରୀ ଏଠାରେ ସ୍ତ୍ରୀ ଅର୍ଥରେ ଖାଆସେ କହୁଛି) ପାଇଁ ଯାହା ଜଗତରେ ସୁନ୍ଦର ସେଇଗୁଡ଼ାକ ଯାଇନି, ତେବେ ଆପଣା କଳାକୁ ଇଲାଜ କିଆ ?

ଆମେ କହୁଁ ଯେପରି ନାରୀମାନଙ୍କ ମୁଣ୍ଡରୁ (ଅର୍ଥାତ୍ ଶ୍ରମଝାଳରୁ ଆସି) କଳିଯୁଗଷଣ୍ଡା, ପୁରୁଷପୁଙ୍ଗବମାନଙ୍କ ଭାଗରେ ପଡ଼ିଥିଲା ବା ପ୍ରେରଣା ଦେଉଥିଲା କିମ୍ୱା ନାରୀ ଯୁଦ୍ଧ କ୍ଷେତ୍ରକୁ ସ୍ୱାମୀଙ୍କୁ ବିଦାୟ ଦେଲାବେଳକୁ ଯେପରି ସିନ୍ଦୂର ପିନ୍ଧାଇ ଦେଇ ସେଇ ପରମ୍ପରା ସ୍ମରଣ କରାଉଥିଲା ଆଜି ବି ସେପରି କରୁ । ସିନ୍ଦୂର ନାରୀର ସତୀତ୍ୱ, ପତିବ୍ରତା, ସ୍ୱାମୀ ଅନୁରାଗର ସ୍ମାରକୀ ହୋଇ ରହିବା ସଙ୍ଗେ ସଙ୍ଗେ ସେଇ ଭାଲପଟରେ ଥାଇ. ପୁରୁଷକୁ ପୌରୁଷର ସାଧନାରେ ପ୍ରୋତ୍ସାହିତ କରୁ । 'ଯୁବତୀଏ ସଦା ହୋଇଥାନ୍ତି ସିନା ବୀର ପ୍ରତି ଅନୁକୂଳ' ଭାବ ବଜାୟ ରହୁ । ସ୍ତ୍ରୀର ସିନ୍ଦୂର ପୁରୁଷର ବାହୁରେ ବଳ ସଂଚାର କରୁ । ଆତ୍ମାରେ ପ୍ରତ୍ୟୟ ଆଣିଦେଉ ।

ଆମର ଏ ପ୍ରସ୍ତାବ ଗୁଡ଼ାକ କ'ଣ ଅଘଟଣ, ଅଡୁଆ, ଅସଜ, ଅବରଗ ଲାଗୁଛି ?








## କଳି

କଳି । ମାଷ୍ଟରଙ୍କୁ ଏହି ଶବ୍ଦଟିର ମାନେ ପଚାରିଲେ ହୁଏତ କହିବେ- 'ଫୁଲର କଢ଼' । ଯଦି ପିଲାଟି ପୁଣି ପଚାରେ- ସାର୍, ଅମୁକ ସାର୍ ଅପଣଙ୍କ ପାଖକୁ ଟିଉସନ୍ ହେବାକୁ ଆସୁଥିବା ପିଲାଟିକୁ ମଙ୍ଗାଇ-ଭଙ୍ଗାଇ, ଦୁସରା ସାର୍‌ଙ୍କ ପାଖକୁ ବରଗି ଦେବାରୁ ଆପଣ ଓ ସେହି ଅମୁକ ସାରଙ୍କ ଭିତରେ ଯେଉଁ ଝଟାପଟା ସେଦିନ ଲାଗିଗଲା, ସେଇଟିକୁ କଅଣ କୁହାଯିବ ? ମାଷ୍ଟରଙ୍କ ରାଗ ହୁଏତ ଦପ୍‌ଦପ୍ ଜଳି, ଆଗତ ଭବିଷ୍ୟତ ଚିନ୍ତାରେ ଧପ୍ କରି ଲିଭିଯିବ ।

ଅଭିଧାନ ଅଣ୍ଡାଳିଲେ ହେବ ପରା ! ସେଥିରେ ଦରାଣ୍ଡି ଦେଖିଲେ ବୋଧହୁଏ ଲେଖାଥିବ- କଳିଯୁଗ ଅର୍ଥାତ୍ 'ଯୁଗ ବିଶେଷ' । ତେବେ, ସତ୍ୟ, ତ୍ରେତା, ଦ୍ୱାପର ପରେ 'ଚକ୍ରନେମି କ୍ରମେଣ' ଆସୁଥିବା କଳିଯୁଗ କଥା ପଡୁ ।

ଯେମିତି ଗୋଟିଏ ବର୍ଷ ପରେ ଆଉ ଗୋଟିଏ ବର୍ଷ ଆସେ, ଗୋଟିଏ ଶତାବ୍ଦୀ ପରେ ଆଉ ଗୋଟିଏ ଶତାବ୍ଦୀ ମାଡ଼ି ଆସେ, ସେମିତି ଏଇ 'ଯୁଗ ବିଶେଷଟି' ତ ପୁଣି କାହା ବାଦେ କେମିତି ଗୋଟାଏ ଗୋଟାଏ ଘଟଣା ଦୁର୍ଘଟଣା ଡେଇଁଡେଇଁକା ଆସିଥିବ ! ଆଜି କାଲି

ଯେମିତି ଡିସେମ୍ବର ୩୧ ରାତି ଅଧରେ ବର୍ଷବିଦାୟ, ବର୍ଷବନ୍ଦାପନା ହେଉଛି; ସେମିତି କିଛି ସେତେବେଳେ ହୋଇଥିବ ତ? ନାଁ ନାଇଁ?

ଭାଗବତରେ ଗୋଟାଏ ଉପାଖ୍ୟାନ ଅଛି । ସେଇ ଉପାଖ୍ୟାନ ବା ଆଖ୍ୟାନ ଭିତରେ ଖଞ୍ଜା ହୋଇଥିବା କଥାଟିକୁ ଫିଟାଇ କହିଦେଲେ କଳିଯୁଗର ଗୁମର ହାଟେ ପଡ଼ି ଦାଣ୍ଡେ ଗଡ଼ଗଡ଼େଇବ ।

ଭାଗବତର ଦଶମ ସ୍କନ୍ଧରେ ତ ଶ୍ରୀକୃଷ୍ଣଙ୍କ ସେରନ୍ତାପଣ ସରିଚି! ତହିଁକି ତାଙ୍କର ପାରିଲାପଣର ବି ପଟାନ୍ତର ନାହିଁ ।

ଇନ୍ଦ୍ର ଗୋପପୁର ଉପରେ ବହପ ଦେଖାଇ ହେଲେ । କୃଷ୍ଣଙ୍କର ବକଟେ ହେଲେ ବି ନିଶ ଉଠି ନଥିଲା ମୋଡ଼ିବା ପାଇଁ । ତଥାପି ଛାଡ଼ିଲେନି । ସେ ହେଲେ ଗିରିଧାରୀ । ଇନ୍ଦ୍ରଙ୍କୁ ନାକେଦମ୍ କଲେ । ବାରବାର ଇନ୍ଦ୍ରଙ୍କର ନାକ ନିଶ ତଳେ ପଡ଼ିଗଲା । ସେ ହାରିଗଲେ । ଦୋଷମାନିଲେ । ଅଲାଜୁକ । ପୁଣି କହିଲେ କ'ଣ ନା –

ଅଳପ ଲୋକେ ଅଧିକାର ।
ତୁ କିମ୍ପା ଦେଲୁ ଦାମୋଦର ।।

କିଓ, ଅଧିକାରଟି ତପସ୍ୟା କରି, ଫୁସୁଲା ଫୁସୁଲି କରି ହାସଲ କଲା ବେଳକୁ ଆଗ । ତାକୁ ପୁଣି ଜାହିର୍ କଲାବେଳେ, କଲ । ଏତେ ବେଳକୁ ଧର୍ମକୁ ଆଖିଠାର ମାରିଲା ଭଳି କଥା କହୁଛ!

ଆଉ ଦିନକର କଥା । ବ୍ରହ୍ମା ଆପଣାର ପାରିଲାପଣ ଦେଖାଇବାକୁ ବାହାରି ପଡ଼ିଲେ । ଗୋପରେ ପହଞ୍ଚିଲେ । ଗାଈଗୋରୁଙ୍କ ସମେତ ଗୋପାଳ ବାଳକମାନଙ୍କୁ କମଣ୍ଡଳୁ ଭିତରେ ଲୁଚାଇ ଦେଲେ । ଏଇ ମାଜିକ୍‌ରେ କି କୃଷ୍ଣଙ୍କୁ ହୁରୁଡ଼େଇ ହୁଏ! ମାୟାଧର ନିଜ ଦେହରୁ ସେଇ ସେଇ ସମାନ ସୃଷ୍ଟି କରିଦେଲେ । ବ୍ରହ୍ମା ଭାଣ୍ଡିଆ ହେଲେ । ହାର୍ ମାନିଲେ । କହିଲେ- 'ମୁଁ ଅଳପକିଆ ମଣିଷ । ତତେ ପୁଣି ଭଣ୍ଡିବାକୁ ବସିଲି । ଛାଡ଼, କାଇଲି ତ ଖାଲି ମୋର ନୁହଁ, ତୋର ବି ସେଥିରେ ଭାଗ ଅଛି ।' ବ୍ରହ୍ମାଙ୍କର ବି ସେଇ ଦୋଷାରୋପ । ଏକା କଥା-

ଅଳପ ଲୋକେ ଅଧିକାର ।
ତୁ କିମ୍ପା ଦେଲୁ ଦାମୋଦର ।।

ବ୍ରହ୍ମା ତ ସହଜେ ଦେବତା । ବୁଢ଼ା ଲୋକ । ତାଙ୍କ କଥା ନିଆରା । କାଳୀୟ ବୋଲି ଗୋଟାଏ ଜନ୍ତୁ ଥିଲା । ଭାରି ତୋଡ଼ ଦେଖାଇ ହେଲା । ବଡ଼ ଉତ୍‌ପାତ କଲା । କାଳିନ୍ଦୀ

ହ୍ରଦରେ ମିଲିଟାଣ୍ଟ୍ ସାଜିଲା । ଯିଏ ସେ ଭିତରେ ପଶିଲା, ତାକୁ ଖତମ୍ କରି ଦେଉଥିଲା । ଗିରିଧାରୀ କୃଷ୍ଣ, ନଟବର ହେଲେ । ତା' ମୁଣ୍ଡ ଉପରେ ଚଢି ଏମିତି ନାଚ ନାଚିଲେ ଯେ ସେଇଟା ଗରଳ ସହିତ ଅନ୍ତରକ୍ତ ଉଦ୍‌ଗାରି ପକାଇଲା । ଉତ୍ପାତିଆ ଜନ୍ତୁଟା 'ବିଚରା' ହୋଇଗଲା । ଘାଇଲା ହୋଇ ପଡ଼ିଗଲା । ଆଖରି କରପତ୍ର ଯୋଡ଼ି ନିଉଛାଳି କଲା । କହିଲା-

ଗରଳେ କଲୁ ଅଧିକାରୀ ।

ସ୍ୱଭାବ ଛାଡ଼ିବି କିପରି ।।

ପୁଣି ଇନ୍ଦ୍ର ଓ ବ୍ରହ୍ମାଙ୍କ ପରି କୃଷ୍ଣଙ୍କ ଉପରେ କାଇଲି ନଦି, କହିଲା-

ଅଳପ ଲୋକେ ଅଧିକାର ।

ତୁ କିମ୍ପା ଦେଲୁ ଦାମୋଦର ।

ଜନ୍ମ-ଅଧିକାରରୁ ହେଉ, କି ସଂଖ୍ୟାଗଣତିରେ ଅଳପଙ୍କ ଭିତରେ ଆସୁଛି ବୋଲି ଅନୁକମ୍ପାରେ ହେଉ, ଅଥବା ଅନ୍ୟ କୌଣସି ଦୃଷ୍ଟିରୁ ହେଉ; ଯିଏ ଯୋଉଥିପାଇଁ ଏଯାବତ୍ ଯୋଗ୍ୟତା ଓ ସଂସ୍କାର ହାସଲ୍ କରିନାହିଁ, ତାକୁ ଯୋଗ୍ୟ ଲୋକଙ୍କ ପାଇଁ ଥିବା ଜାଗାରେ ଅଙ୍ଗିଲା ଆଇନ୍ ବାହାରକରି ବସାଇଦେଲେ ଏମିତି ଅଲବତ୍ ଘଟିବ । ସେ ଯାହା ହେଉ; କୃଷ୍ଣ ଶେଷରେ ସ୍ଥିର କଲେ- ଆଉ ଏ ପାଲାରେ ପଶିବେ ନାହିଁ ।

ଦ୍ୱାପର ସରିସରି ଆସୁଥାଏ । ଆଉ 'ଅଳପ ଲୋକରେ ଅଧିକାର' ଦେଲେ ଚଳିବନି । ଗୋଟାଏ 'ବାହାଦୁର' ଲୋକ ବାହାର କରିବାକୁ ପଡ଼ିବ । ଶ୍ରୀକୃଷ୍ଣ ତ ପୁଣି ଅବସର ନେବେ ! ସେ ଥିଲେ ଯେ ବାଗବରଗରେ ସବୁ ସମ୍ଭାଳି ନେଉଥିଲେ । ଦ୍ୱାପର ସରନ୍ତିବେଳକୁ ଅବସର ଘେନି ସ୍ଥାୟୀ ନିବାସକୁ ଚାଲିଗଲା ପରେ ପୁଣି ବାହୁଡ଼ିବା କଷ୍ଟ । ଚିନ୍ତାମଣି ସେଇ ଚିନ୍ତାରେ ପଡ଼ିଲେ । ଅଚିନ୍ତା ହେବେ କେମିତି ?

ସେତେବେଳକୁ ଉତ୍ତରା ଗର୍ଭବତୀ । ଅଭିମନ୍ୟୁଙ୍କ ସନ୍ତାନ ତାଙ୍କ ଗର୍ଭରେ । ଏଣେ ପୃଥିବୀକୁ ନିପାଣ୍ଡବା କରିବ ବୋଲି ଅଶ୍ୱତ୍ଥାମା ବ୍ରହ୍ମଶିରା ଅସ୍ତ୍ର ପେଶିଛି । ସେ ଗର୍ଭସ୍ଥ ସନ୍ତାନକୁ ବି ଛାଡ଼ିବ ନାହିଁ । କୃଷ୍ଣ କାମ ପରି କାମଟିଏ କଲେ । ଚକ୍ର ଆଢୁଆଳ କରି ସେହି ଗର୍ଭସ୍ଥ ସନ୍ତାନଟିକୁ ରକ୍ଷା କରିଦେଲେ । ପୋଟେନ୍‌ସିଆଲିଟି ବା ସମ୍ଭାବନାଥିବା ଲୋକଟିକୁ ଅବଶ୍ୟ ରଖିବାକୁ ହେବ: ଏଇ ନିୟମରେ ସେ ଏହି କାମଟି କଲେ । ସେଇ ସୁରକ୍ଷିତ ସନ୍ତାନ ହେଲେ- ପରୀକ୍ଷିତ । ସେ ପୁଣି- 'ଏକମାତ୍ର କୁଳାଙ୍କୁର କୁରୁକ୍ଷେତ୍ର ବନେ ।' କୁରୁବଂଶର କୁଳାଙ୍କୁର ।

ଶ୍ରୀକୃଷ୍ଣଙ୍କ କାମ ସରିଗଲା । ସେ ଯେଉଁଥିପାଇଁ ଅବତାର ଗ୍ରହଣ କରିଥିଲେ, ସେ କାମ ବଢ଼ିଗଲା । ଶରୀର ତ୍ୟାଗ କଲେ । ତାଙ୍କର ସ୍ଥାୟୀ ଠିକଣା- ବୈକୁଣ୍ଠପୁର । ସେ ସେଠାକୁ ଚାଲିଗଲେ । ଯୁଧିଷ୍ଠିର ତ ସମୟ ଅସମୟରେ ତାଙ୍କରି ଉପରେ ଭିରା ଦେଇ ଚଳୁଥିଲେ । ତାଙ୍କୁ ସଂସାରଟା ନିଛାଟିଆ ଲାଗିଲା । ସେ ଭାଇମାନଙ୍କର ବୈଠକ ବସାଇଲେ । ଆପଣା ଇଚ୍ଛାରେ ନିଜ ଦାୟିତ୍ୱରୁ ଅପସରି ଯିବାର ନିଷ୍ପତ୍ତି ଶୁଣାଇ ଦେଲେ । କଳି ଆସି ଯିବ କି ନା, ଆଉ ରହି ନ ଯୋଗାଇ ।

ଯୁଧିଷ୍ଠିର ତ ମୁରବି ଭଳିଆ ଭାଇ । ତାଙ୍କ କଥା ବେଦର ଗାର । ସେ କହିଦେଲେ- ପରୀକ୍ଷିତ ହାତରେ ରାଜ୍ୟ ସମର୍ପିଦେବା । 'କଳି' ଆମ ପାଖ ପଶିବା ଆଗରୁ ଚାଲ ତାକୁ ଖୋଜି ବାହାର କରିବା । ସେ ଯିବାକୁ ସଜ ହୋଇଗଲେ । ପରିକ୍ଷୀତ ହେଲେ ଦ୍ୱାପର ଯୁଗର ଶେଷ ରାଜା । କବିବର ରାଧାନାଥ 'ମହାଯାତ୍ରା' କାବ୍ୟରେ କଳିର ଆଗମନ ବୃତ୍ତାନ୍ତ ବର୍ଣ୍ଣନା କରିଛନ୍ତି । ଅଧ୍ୟାପକମାନେ ତାକୁ କ୍ଲାସରେ ପଢାନ୍ତୁ କି ତା' ଉପରେ ଟୀକାଟିପ୍ପଣୀ ଅଥବା 'ମାନେ ବହି' ଲେଖି ପଇସା ରୋଜଗାର କରନ୍ତୁ; ଆମେ ସେଥିକି ଆଖିବୁଜି ଦେବା । ଭାଗବତର ଉପାଖ୍ୟାନଟି ଆମ ପାଇଁ ଅସଲ କଥା ।

ପରୀକ୍ଷିତ ସରଯୂନଦୀ କୂଳରେ ବୁଲୁଥିଲେ । ସେ ସେଠାରେ ଗୋଟିଏ ବୃଷଭର ନିର୍ଯାତନା ଦେଖିଲେ । ବୃଷଭଟିର ତିନୋଟି ଗୋଡ଼ ଭାଙ୍ଗିଯାଇଛି । ସେ ଗୋଟିଏ ଗୋଡ଼ରେ ଛିଡ଼ା ହୋଇଛି । ଜଣେ ପିଙ୍ଗଳକାୟ ଲୋକ ଲୁହାଛଡ଼ଟାଏ ଧରି ତାକୁ ପିଟି ଦେଇଯାଉଛି ଅତି ନିର୍ମମ ଭାବରେ; ଯାହାକୁ କହନ୍ତି ଗୋଗଛ ବାଡ଼ିଆ । ତା' ପାଖରେ ଗାଈଟିଏ ଛିଡ଼ା ହୋଇଛି କାକୁସ୍ଥତର ହୋଇ । ଆଖିରୁ ତାର ଧାର ଧାର ଲୁହ ବୋହିଯାଉଛି । ହଗିମୁତି ଆଣୁଏ । ସେ ବୃଷଭର କଷଣ ଦେଖି ସହିପାରୁ ନାହିଁ । ଦୁଃଖ, ଯନ୍ତ୍ରଣାରେ ଫାଟି ପଡୁଛି । ଏହି ନିଷ୍ଠୁର ନିର୍ମମ ବ୍ୟକ୍ତିଟି କିଏ ?

ଲୋକଟା ରାଜପୋଷାକ ପିନ୍ଧିଛି । ପରୀକ୍ଷିତ ଅଭିମନ୍ୟୁଙ୍କର ପୁଅ, ଅର୍ଜୁନଙ୍କର ନାତି । ତାଙ୍କ ପଛରେ ଗୋଟାଏ ବିରାଟ କ୍ଷତ୍ରିୟ ପରମ୍ପରା । ସେ ପୁଣି ରାଜା । ତାଙ୍କ ରାଜ୍ୟରେ ଏ କାଣ୍ଡ ଦେଖି ସହିବେ କେମିତି ? ସେ ରାଗରେ ଖଡ୍‌ଗହସ୍ତ ହେଲେ । ରାଜବେଶଧାରୀ ଲୋକଟା ତ ରଜା ନୁହେଁ । ତାକୁ ବନ୍ଦୀ କରାଗଲା । ସମସ୍ତଙ୍କଠାରୁ ସାକ୍ଷୀ ପ୍ରମାଣ ନିଆଗଲା ।

ବଡ଼ ଆଚମ୍ବିତ କଥା ! ଧେନୁ ବା ଗାଈଟି ହେଉଛି- ଧରିତ୍ରୀ । ବୃଷଭ ଖୋଦ୍ ଧର୍ମ । କିନ୍ତୁ ତାଙ୍କ ଗୋଡ଼ ତିନୋଟି ଭାଙ୍ଗିଲା କେମିତି ? ଆକ୍‌ସିଡେଣ୍ଟ୍ ହୋଇଥିଲା ନା କ'ଣ ? କିନ୍ତୁ ମନଟା ପିତା ହୋଇଗଲା । ବଡ଼ ଗୋଳେଇ ଘାଣ୍ଟି ଲାଗିଲା । ଉଜୁକୁରି ଲାଗିଲା । ରହସ୍ୟଟା ଆମୂଳଚୂଳ ବୁଝିବାକୁ ମନ ଉଛନ୍ନ ହେଲା ।

ବୁଝୁବୁଝୁ ଘଟଣାଟା ନିଆରା । ସତ୍ୟ ଯୁଗରେ ଧର୍ମ ପୂର୍ଣ୍ଣ ତେଜରେ ଥାଆନ୍ତି; ଅର୍ଥାତ୍ ଚାରିପାଦରେ ବିରାଜମାନ । ତ୍ରେତା ଯୁଗରେ ଟିକିଏ ଊଣା, ତିନିପାଦ । ଦ୍ୱାପରରେ ଧର୍ମ ଦୁଇ ପାଦ । ଏ ଯୁଗରେ ଧର୍ମ ଅଧର୍ମଙ୍କ ଭାଗ ଅଧା ଅଧା, ସମାନ ବାଣ୍ଟ । କଳିଯୁଗରେ ଧର୍ମ ଏକ ପାଦ; ଅର୍ଥାତ୍ ବଡ଼ କ୍ଷୀଣ ଅବସ୍ଥା ' ଆଉଟିକିଏ ବୁଝାଇ କହିଲେ- ସତ୍ୟଯୁଗରେ ଖାଣ୍ଟି କ୍ଷୀର । ପୂରା ଲିଟରକରେ ଲିଟରକ ଯାକ ଖାଣ୍ଟି । ତ୍ରେତାରେ ତିନିପା କ୍ଷୀରରେ ପାଏ ପାଣି ମିଶିଲା । ଦ୍ୱାପର ବେଳକୁ ଅଧା କ୍ଷୀର ଅଧା ପାଣି । କଳି ଯୁଗରେ ପାଏ କ୍ଷୀରରେ ତିନି ପା ପାଣି । ଅନ୍ୟ ପ୍ରକାରେ କହିଲେ, ବ୍ରହ୍ମା ତାଙ୍କ ବ୍ରହ୍ମାଣ୍ଡ ପାଇଁ ଯେତିକି ପଉଟି ପଡ଼ି ପଠାଇଥିଲେ, ସେଥିରୁ ବାଟମାରଣା ହୋଇ ଯାହାର ଗୋଟାଏ ପ୍ରାପ୍ୟ, ତାକୁ ଚଉଠେ ମିଳିଲା । ତେଣୁ ଖାଦ୍ୟ ସଂକଟ । ଏଇ ହେଲା କଳିକାଳରେ ଧର୍ମର ସ୍ଥିତି । ଧରିତ୍ରୀ ବିଚାରୀ ଏ ଦୃଶ୍ୟ ଦେଖି କ'ଣ ବା କରିବ ? ଭାଗ୍ୟକୁ ସେତିକି ବେଳେ ପରୀକ୍ଷିତଙ୍କ ପରି ରାଜା ପହଞ୍ଚିଗଲେ ।

ପରୀକ୍ଷିତ 'ଅଳପ ଲୋକ' ନୁହନ୍ତି । ଅଧିକାରଟି ନେଇ ତୁଲାଇ ପାରିବା ଭଳି ପୁରୁଷ । ସେ ରାଜବେଶ ପରିହିତ ପିଙ୍ଗଳକାୟ ନିଷ୍ଠୁର ଲୋକଟାକୁ ଜେରା କଲେ । ସେ ରାଜାଙ୍କ ଟାଣପଣ ଦେଖି ତ୍ରସ୍ତ ! ଦୋଷ ମାନିଗଲା । ନିଜର ଅସଲ ପରିଚୟ ଦେଇ କହିଲା- ମୁଁ କଳିଯୁଗ । ମୋ ବେଳ ପଡ଼ିଲା ମୁଁ ଆସିଲି । ରୁଟିନ୍ ଅନୁସାରେ ଡେରି କରି ନାହିଁ କି ଡିଉଟିରେ ବି ଖିଲାପ୍ କରିନି । ରାଜା ପରୀକ୍ଷିତ ମନେ ମନେ ନିଷ୍ପତ୍ତି ନେଇ ଗଲେ । କହିଲେ- 'କେମନ୍ତ ହେ ! ତୁ କି କି ମାନ କରିବୁ ?'

କଳିଯୁଗ କହିଲା- 'ମୋତେ ମୋ ଗୁଣ ଅନୁସାରେ କାମ କରିବାକୁ ପଡ଼ିବ । ମୁଁ ଯେତିକି ସମୟ ପାଇଁ ଆସିଛି, ସେଇ ସମୟ ଭିତରେ ମୋ କାମ କରି ଚାଲିଯିବି । ମୋତେ ମୋ ଦାୟିତ୍ୱ ତୁଲାଇବାକୁ ଦିଅନ୍ତୁ । ଆପଣ ମହାନ୍, ଆପଣ ଉଦାର । 'ପ୍ଲିଜ୍', ମୋତେ 'କାଇଣ୍ଡ୍‌ଲି' ମାଫ୍ କରନ୍ତୁ ।' ପରୀକ୍ଷିତ କି ଏ ବାଲିଙ୍ଗି ଶୁଣିବା ଲୋକ ! ରାଗିଗଲେ । ଆଖି ତରାଟି, ଖଣ୍ଡା ଉଚ୍ଚାଇ କହିଲେ- 'ଚୋପ୍' । କଳିଯୁଗ, ଦି ପାହୁଣ୍ଡ ପଛେଇ ଗଲା । ଭାବିନେଲା କ'ଣ କହିବ, କ'ଣ କରିବ । ବହୁତ ଖୁସାମତି କଲା । ନେହୁରା ହେଲା । ପରୀକ୍ଷିତ ଶୁଣିଲେନି । କହିଲେ- 'ତୁ ଏଇଠି ବନ୍ଦୀ ହେଲୁ । କୁଆଡ଼େ ଯାଇ ପାରିବୁନି । ବୁଝି ଖବରଦାର୍ ।'

କଳିଯୁଗ ବଡ଼ ଅଡୁଆରେ ପଡ଼ିଲା । ପୁଣି ଦୟିନି କଲା । କାକୁତି ବିନତି ହୋଇ କହିଲା- 'ମୋତେ ଚଳପ୍ରଚଳ ହେବା ଭଳି ଅଳ୍ପ କେତୋଟି ସ୍ଥାନ ହେଲେ ମିଳୁ ।' ସେ ଏମିତି ଅନୁନୟ ହୋଇ, ବିକଳ ଚାହାଣି ଚାହିଁ କହିଲା ଯେ, ପରୀକ୍ଷିତ ଦୋହରା ବିଚାର କଲେ ।

ବହୁତ ଭାବି ଚିନ୍ତି ତାକୁ ଚାରିଟା ସ୍ଥାନ ଛାଡ଼ି ଦେଲେ । ସେଗୁଡ଼ିକ ହେଲା- ଦ୍ୟୁତ-କ୍ରୀଡ଼ା, ପ୍ରାଣୀ ମାରଣ ସ୍ଥାନ, ମାଦକ ଦ୍ରବ୍ୟ ସେବନ ସ୍ଥାନ, ବେଶ୍ୟାଳୟ । ବେଶ୍ ଏତିକି ।

କଳିଯୁଗ ଭାବିଲା- କାନ୍ଦୁଥା ଯାହା ପାଉଚ ବାନ୍ଧୁ ଥା । ଏଇ ଚାରୋଟି ପାଇଗଲା ପରେ, ପୁଣି ଫୁସୁଲାଫୁସୁଲି କରି ଗୁହାରି ଖୁସାମତି କରି ଦି' ଚାରିଟା ସ୍ଥାନକୁ ମାଡ଼ି ବସିବ ବୋଲି ଫିକର କଲା । ବଡ଼ କଅଁଳ ସ୍ୱରରେ ନେହୁରା ହୋଇ କହିଲା-

ପଞ୍ଚମ ଭାଗ ଦିଅ ମୋରେ ।
ମୁଁ ତହିଁ ଥିବି ନିରନ୍ତରେ ।।

ରାଜା ତାକୁ ପଞ୍ଚମ ସ୍ଥାନଟି ବି ମଞ୍ଜୁର କରି ଦେଲେ । ସେଇଟା ହେଲା- 'ସ୍ୱର୍ଣ୍ଣ !'

ସ୍ୱର୍ଣ୍ଣ ବା ସୁନା ଯଦି ହେଲା- କଳିର ଗୋଟାଏ ସ୍ଥାନ; ତାକୁ ରଖି ନ ଯୋଗାଇ ! ରଖ ନରଖ, କଳି ତ ଏବେ ଚରାଚର ସଞ୍ଚରି ଗଲାଣି । ରଜାମାନଙ୍କ ରାଜୁତି ବା ରାଜତନ୍ତ୍ର ସିନା ଉଠିଯାଇଛି, ତା'ର ବିକଳ୍ପ ରୂପେ ପରା ପ୍ରତିଷ୍ଠିତ ହୋଇଛି ଗଣତନ୍ତ୍ର । ଇଏ ଆଉ ପ୍ରକାରେ ଶାସନ ବ୍ୟବସ୍ଥା, ଯାହା ବିଷୟରେ ଏବେ ପ୍ରତ୍ୟେକ ନାଗରିକ ଅଳ୍ପ ବହୁତେ ଅବଗତ । ଲୋକ ପ୍ରତିନିଧି ମୂଳକ ଶାସନ ହୋଇଥିବାରୁ ଭୋଟ୍, ନିର୍ବାଚନ, ପଞ୍ଚାୟତ, ବିଧାନସଭା, ରାଜ୍ୟସଭା, ବିଧାୟକ, ସାଂସଦ, ମନ୍ତ୍ରୀ, ସରପଞ୍ଚ ଆଦି ଶବ୍ଦମାନ ଏବେ ପ୍ରଚଳିତ ଓ ସେଇ ପଦବୀଧାରୀ ବ୍ୟକ୍ତି ଏବଂ ସେମାନଙ୍କ ସଭା ଓ ସମ୍ପର୍କ ଚଳୁଛି । ଦେଶକୁ ଚଳାଉଛି । ପଞ୍ଚାୟତରୁ ପାର୍ଲିଆମେଣ୍ଟ (Parliament) ଯାଏ ପ୍ରତିଟି ସ୍ତର ବା ପରସ୍ତ କଳିର ସଂକ୍ରମଣରୁ ମୁକ୍ତ ଅଛି କି ?

ତାଳୁରୁ ତଳିପା ହେଉ କି ତଳିପାରୁ ତାଳୁ ଯାଏ ହେଉ, ଖାଲି ଉଣ୍ଡି ଉଣ୍ଡି ଯାଆନ୍ତୁ । ଅନୁସନ୍ଧାନ କରନ୍ତୁ, ଦେଖି ପରଖନ୍ତୁ- କୋଉଠି ସୂକ୍ଷ୍ମ ରୂପରେ ହେଉ କି ଦୃଶ୍ୟମାନ ରୂପରେ ହେଉ କଳିର ଉପସ୍ଥିତି ଅନୁଭବ କରିହେଉଛି କି ନାଇଁ । କୋଉଠି ଭଲା କଳି ତାର କୀଟ ନଛାଡ଼ିଛି ! ଏବେ ପୂରା ରାଜଦଣ୍ଡଟି ବି କୀଟଦଂଶିତ । କଳି ପ୍ରେରିତ କୀଟମାନେ ତାକୁ ଖତିରା, ଦଦରା କରି ଦେଲେଣି । ତେଣୁ ତାର ଟାଣପଣ ନାହିଁ । କାହାର ?

'କଳି' ଆଉ ଅଫୁଟା କି ଦରଫୁଟା 'କଢ଼' ଅବସ୍ଥାରେ ନାହିଁ, ଟହଟହ ପ୍ରସ୍ଫୁଟିତ । ତା'ର ଉତ୍କଟ ଗନ୍ଧ ନାସାରନ୍ଧ୍ରମାନଙ୍କରେ ପ୍ରବେଶ କରି କେତେ ମସ୍ତିଷ୍କକୁ ବିଭ୍ରାନ୍ତ କରିପକାଇଲାଣି । ରାଜନୈତିକ ଦଳଠାରୁ ପ୍ରଶାସନର ପ୍ରତିଟି ସ୍ତରରେ ତାର ଅଧିଷ୍ଠାନ । ଦେଶ ଦେଶ୍ ଭିତରେ, ରାଜ୍ୟ ରାଜ୍ୟ ଭିତରେ, ଜାତି ଜାତି, ଧର୍ମ ଧର୍ମ, ପରିବାର ପରିବାର ମଧ୍ୟରେ ପୁଣି ପରିବାର ଭିତରେ ଭାଇ ଭାଇ, ସ୍ୱାମୀ-ସ୍ତ୍ରୀ, ବାପ-ପୁଅ ଭିତରେ, ବନ୍ଧୁ ବନ୍ଧୁ ଭିତରେ କଳି

ଲାଗିଛି ତା'ର, କେବେ ଶୀତଳ କେବେ ଉଗ୍ର ସ୍ୱରରେ । ସେ ଯେଉଁ ସମ୍ପର୍କକୁ ଥରେ ଉଜାଡ଼ି ଦେଉଛି, ତାକୁ ସଜାଡ଼ିବା ସହଜ ନୁହେଁ ।

କଳି ତ ଗୋଟାଏ ସମୟ-ଅବଧିକୁ ଅଧିକାରଭୁକ୍ତ କରି ବସିଛି । ସିଏ ବାତ୍ୟା, ମହାବାତ୍ୟା, ସୁନାମି, ଫାଇଲିନ୍ କି ଭୂମିକମ୍ପ ନୁହଁ ଯେ ଗୋଟାଏ ସମୟ ଭିତରେ ତାର ବଳ ଦେଖାଇ ଉଜାଡ଼ି, ଧ୍ୱସଂକରି, ଗ୍ରାସ କରି ଚାଲିଯିବ ଏବଂ ତା'ପରେ ସେଥିରକମାନଙ୍କରୁ ଯେଉଁମାନେ ବର୍ତ୍ତିଯାଇଥିବେ, ସେମାନେ ଝାଡ଼ିଝୁଡ଼ି ହୋଇ ଉଠିବେ । ପୁଣି ଅଣ୍ଟା ସଳଖି ଠିଆ ହେବେ । ସେ ଗୋଟାଏ ଯୁଗ । କଳି ଆଗରୁ ଆସ୍ଥାନ ଜମାଇଥିଲା ଦ୍ୱାପର । ସେ ଯୁଗରେ ଯାହାକୁ ଯାହାକୁ ଗ୍ରାସକରି, ଧ୍ୱଂସକରି, ଆପଣା ସାଙ୍ଗରେ ଧରି ଚାଲିଗଲା ଗଲା । ତାର ଶେଷ ଆଡ଼କୁ କି କି ମାନ ଘଟିଛି, କଳି କେମିତି କୋଉ ରୂପ ଘେନି ଆସିଛି, କୋଉ ସର୍ତ୍ତରେ କେତେ ଅଧିକାର କ୍ଷେତ୍ର ପାଇଛି, ସେକଥା ଆଲୋଚନା କରିଛେ । ଏବେ କଳି ଆଉ ପରୀକ୍ଷିତଙ୍କ ବୋଲରେ ପାଞ୍ଚଟା ସ୍ଥାନରେ ନଜରବନ୍ଦୀ ହୋଇ ରହିନାହିଁ । ପରୀକ୍ଷିତଙ୍କୁ ତକ୍ଷକ ଦଂଶନ କଲା ବାସି, ତାର ବହପ କାହିଁରେ କ'ଣ ବଢିଯାଇଛି । ତା'ର ବ୍ୟାପ୍ତି ପବନ ଦେବତା, ଅଗ୍ନି ଦେବତାଙ୍କ ସଙ୍ଗେ ସମାନ କି ତତୋଽଧିକ । କେବେ ଏହାର ବେଳକାଳ ସରିବ କି ବଳ କମି କମିଯିବ ବା ଦୁର୍ବଳ ହୋଇଯିବ କେଜାଣି ! ତେବେ 'କଳି'କୁ କ'ଣ ଆମେ ଖାଲି ଗାଳି ଦେବା, ତା'ର ଅସାର କି ଖରାପ ଦିଗଗୁଡ଼ିକ ଦେଖିବା ? ସେଇଟା ପରା ଗୋଟାଏ ସମୟ, ପୁଣି ଆମ ସମୟ ଯେତେ ଅସୁନ୍ଦର, ଅବରଗ, ରୋଗକ୍ଲିଷ୍ଟ ହେଲେ ବି ଆପଣା ଦେହଟି କାହାକୁ ଅସାର ଲାଗେ କି ଉଜେଇଁ ଦେବାକୁ ମନ ଡାକେ ? ସେମିତି ପରା ଆମ 'ସମୟ'ଟି । ସେ କ'ଣ ଆମକୁ କିଛି ଦେଇନି ?

ଏଇ କଳିଯୁଗରେ ବିଜ୍ଞାନ ଆମକୁ କୋଉଠୁ ଆଣି କୋଉଠି ପହଞ୍ଚାଇଲାଣି ! ମଣିଷ ଆଜି କେତେ କେତେ ସୁବିଧା ହାତ ପାହାନ୍ତାରେ ନ ପାଉଛି । ତେଣୁ ଖାଲି ଆତଙ୍କିତ ହୋଇ ସମୟକୁ ଗାଳି ଦେଇ, ତା'ରି ମୁଣ୍ଡରେ ସବୁଯାକ ଦୋଷ ନଦି ଦେଇ ଖସିଯିବା କି ଆପଣାକୁ ଖସାଇ ନେବା ଉଚିତ ହେବ କି ?

ଏବେ ଦେଖନ୍ତୁ ଯେ, ପୁଅ ବାପକୁ ନମାନିଲା, କି ଛାତ୍ର ଶିକ୍ଷକଙ୍କୁ ନମାନିଲା, ଦୋଷ କଳିଯୁଗର । ଜଣକଠାରୁ ବିପଦ ବେଳେ ସାହାଯ୍ୟ ନେଇ ଜଣେ ନ ଦେଲା ତ ନାଇଁ, ମାଗିବା ବେଳେ ନାନା ଅକଥା କହି ଘଉଡ଼ି ଦେଲା, ସତ୍ୟାନାଶ କରିବାକୁ ବସିଲା ତ ଦୋଷ କଳିଯୁଗର । ଫସଲ ହାନି ହେଲା କି ଦ୍ରବ୍ୟ ଦୁର୍ମୂଲ୍ୟ ହେଲା, ଶାସନ ହୁଗୁଳା ହେଲା ତ ହେଲା, ବାଡ଼ ଫସଲ ଖାଇଲା ପରି ଦେଶଟାକୁ ରାହୁପ୍ରାୟ ଗ୍ରାସ କରି ବସିଲା,

ଦୋଷ କଳିଯୁଗର । ଦୃଷ୍ଟାନ୍ତ ବାକ୍ୟ ବି ଅଛି- 'ନିର୍ବୀର୍ଯ୍ୟା ପୃଥିବୀ ନିରୌଷଧି ରସା ନୀଚା ମହତ୍ୱଂ ଗତା, ଭୂପାଳାଃ ନିଜ କର୍ମ ଧର୍ମରହିତା ବିପ୍ର କୁମାର୍ଗଂଗତା, ଭାର୍ଯ୍ୟା ର୍ଭତୃବିରୋଧିନୀ ପରରତା, ପୁତ୍ର ପିତୃ ଦ୍ୱେଷିଣଃ, ହା କଷ୍ଟ ଖଳୁବର୍ତ୍ତତେ କଳିଯୁଗେ ଧନ୍ୟାନରାଃ ଯୋ ମୃତା ।' ଏଭଳି ଶ୍ଳୋକଟାଏ ବୋଲି ଦେଇ, ଏମିତି 'କଳିଯୁଗରେ ମରିଗଲେ ତରିଗଲ ଜାଣ' ବୋଲି କହିବା ଲୋକେ ବି ଅଛନ୍ତି । ତଥାପି ଭାବି ବସିଲେ- ଏଇ ଯୁଗଟି ଆମକୁ ଅନେକ ଅନେକ ଦୁଷ୍ପ୍ରାପ୍ୟ ଦେବଦୁର୍ଲଭ ଦ୍ରବ୍ୟ ଓ ସୁବିଧା ଦେଇଦେଇ ଯାଉଛି ।

ବ୍ୟୋମଯାନ ବା ଆକାଶ ଯାନ, ଜେଟ୍‌ରୁ ସଟଲାଇଟ୍ ଯାଏ ବଡ଼ବଡ଼ ଅବଦାନ କଥା ଛାଡ଼ନ୍ତୁ, କମ୍ପ୍ୟୁଟର୍, ମୋବାଇଲ୍ ଫୋନ୍, ଟି.ଭି., ଏପରି କି ପକେଟ ଟି.ଭି., ପାପୁଲିରେ ଥୋଇ କାମ କଲାଭଳି କମ୍ପ୍ୟୁଟର୍ ପରାୟେ ବସ୍ତୁଟିମାନ ଏଇ କଳିଯୁଗରେ ତ ମଣିଷ ବାହାର କରିଚି, ବ୍ୟବହାର କରୁଛି । କୃତ୍ରିମ ଉପଗ୍ରହ କେଉଁ ଯୁଗରେ ଥିଲା ଓ ସର୍ବସାଧାରଣଙ୍କ ହିତରେ କାମ କରୁଥିଲା ? ତେଣୁ କଳିଯୁଗକୁ ଆଉ ନିନ୍ଦା କରିବା ନାହିଁ । ସେଇଟି ତ ଖାଲି ଗୋଟାଏ 'ଯୁଗ' ବା ସମୟ-ଅବଧି ନୁହେଁ, ଆମରି ସମୟ । ତାକୁ ସୁଧାରିବା ଦାୟିତ୍ୱ ଆମର । ତାକୁ ଆମେ ହିଁ ଉପଯୋଗ ଓ ଉପଭୋଗ କରିବା । ଏକା ଏକା ହୋଇ ହେଉ କି ଏକଜୁଟ୍ ହୋଇ ହେଉ, ପୁଣି ଉଭୟରେ ବି ହେଉ; ତାକୁ ଭଲପାଇବା ଓ ଭଲରେ ନେବା ଆମର ଦାୟିତ୍ୱ । ଦୋଷ ସମୟର ନୁହେଁ, ସମୟରେ ଚଳୁଥିବା ମଣିଷମାନଙ୍କର । ତାହା ପୁଣି ଆଉ କୁଆଡୁ ଆସୁଛି ବୋଲି ଭାବିବା ନିର୍ବୋଧତା, ମଣିଷମନରୁ ବାହାରୁଛି, କାମରେ ହେଉଛି । ଚେତନା ଆମକୁ ବାଟ କଢାଇଲେ, ଉତ୍ସାହ ଆମକୁ ବାଟେ ବାଟେ ଆଗେଇ ନେଲେ କେଉଁ ସମୟଟା ବା ଆମର କ୍ଷତି କରିପାରିବ ।







## ତର ମିଳିଲେ ହରି ଭଜ

ଏମିତି ପଦୁଟିଏ ଆଗରୁ ଶୁଣି ନ ଥିଲି । ଶଙ୍କରାଚାର୍ଯ୍ୟ ତାଙ୍କ ଦେବ୍ୟପରାଧ କ୍ଷମାପଣ ସ୍ତୋତ୍ରମ୍‌ରେ ଲେଖିଥିଲେ- 'କ୍ଷୁଧାତୃଷାର୍ତ୍ତା ଜନନୀଂ ସ୍ମରନ୍ତି ।' ଯେମିତି ଭୋକ ଶୋଷ ହେଲେ ପିଲାଏ ବୋଉକୁ ମନେ ପକାନ୍ତି, ସେମିତି ବିପଦ ଆପଦରେ ପଡ଼ିଲେ ଲୋକ ଦିଅଁ ଦେବତାଙ୍କୁ ମନେ ପକାଏ । ଏଥିରେ କିଛି କାବା ହେବା ଭଳି କଥା ନାହିଁ । ତେବେ 'ତର' ବା ଅବସର ପାଇଲେ ଲୋକ ହରି ଭଜିବା କଥାଟା ନିଆରା । ଯିଏ କାମଦାମରେ ଲାଗି ରହିଥାଏ, ତାରି କ୍ଷେତ୍ରରେ 'ତର' (Leisure) କଥାଟା ଉଠେ । ଯାହାର ମୂଳରୁ କାମ ନାହିଁ, ନିକମା ହୋଇ ବସିଚି, ତା' ପାଇଁ 'ତର' ଶବ୍ଦଟା ଲାଗୁ ହୋଇ ପାରିବ ନାହିଁ । ସୁତରାଂ ଏଇଠି ଅବସର କଟେଇବା କଥା ଉଠୁଛି । କାମିକା ଲୋକ କାମ ଭିତରେ ଅବସର ପାଏ, ସେଇ ଅବସର ସମୟତକ ସେ କେମିତି, କେଉଁଥିରେ କଟେଇବ ବା ଲଗେଇବ, ତାହା ହିଁ ଏଇଠି କୁହାଗଲା ।

ଗାଁ ଗହଳିରେ କହନ୍ତି- 'ଆଗ ଭାତ, ପଛେ ଭାଗବତ ।' ଚାଷବାସର ଯୋଗାଡ଼ କରି, ଧର୍ମ ଚିନ୍ତା କରାଯାଇପାରେ । କୃଷକ କ୍ଷେତ କାମ ସାରି ଭାଗବତ ଶୁଣିବାକୁ ବସୁଥିବା ଅମଳରେ ଏପ୍ରକାର ପ୍ରବାଦ ବାହାରିଛି । କିନ୍ତୁ ଯେଉଁଠି ପିଲାଏ ପଢ଼ା ଛାଡ଼ି, କର୍ତ୍ତବ୍ୟ କର୍ମରେ ନିଯୁକ୍ତ ଲୋକେ କାମ ଦାମ ଛାଡ଼ି ଦୂରଦର୍ଶନକୁ ଅନେଇ ଖେଳ ଦେଖୁଛନ୍ତି,

ସେଠି 'ଡର' କଥା କାହିଁକି ବା ଉଠିବ । କୃଷକର ସିନା ପାଗ ଠିରିକି ଗଲେ ଚାଷ ବିଗିଡ଼ିଯିବ । ଠିକ୍ ବେଳେ ଠିକ୍ କାମ ନକଲେ ସବୁ ଅଡୁଆ ହୋଇଯିବ । ଛାତ୍ର ବା କର୍ମଚାରୀଙ୍କର କଅଣ ଅଛି ! ଆଜିର କାମଟା କାଲିକି ଗଡ଼ିଗଲେ ଯିଏ ବା ଖୋଜାଲୋଡ଼ା କରନ୍ତି ସିଏ ତ 'ଏକା ହେଁସ'ର ଲୋକ । ଛାତ୍ରଛାତ୍ରୀଙ୍କ କଥା ? ପଢ଼ା କୋଉ ଏବେ ପରୀକ୍ଷା ଆଗରୁ ନସରୁଛି କି! ଯେତେବେଳେ ହେଲେ ତ ପଢି ଦେଲେ ହେଲା । ନହେଲେ 'ପରୀକ୍ଷା ଘୁଞ୍ଚାଅ' ଆନ୍ଦୋଳନ । ତା' ଛଡ଼ା ପରୀକ୍ଷା ହଲରେ ବି 'ସାର୍‌ମାନେ' 'ଅସାର' ପାଲଟି ଗଲେଣି । ଯିଏ ଥାଆନ୍ତୁ, ଇନ୍‌ଭିଜିଲେସନ୍ ଗୋଟିଏ ବିଧିକି ଚାଲିଛି । ଛାଡ଼ନ୍ତୁ, ଘର ନିଆଁ ଅଣ୍ଟିରେ ଥାଉ । କହିଲେ, ଲୋକେ ଅସୁଖ ପାଇବେ ।

ଆମ ସଂସ୍କୃତିର ବାରିଦେଲା ଭଳିଆ ଦିଗ ହେଲା ଅବସର ସମୟର ସଦୁପଯୋଗ । ସମାଜଟା କୃଷି ଭିତ୍ତିକ ଥିଲା, ତେଣୁ ସେଇ ଅନୁସାରେ ବାରମାସରେ ତେର ପରବ ଖଞ୍ଜା ହୋଇଥିଲା । ଘରେ ମାଇପେ ତେର ଓଷା ବାର ପୁନେଇଁ ପାଳୁଥିଲେ । ସେଥିରେ ମାଇପୀ ମନ ସଜାଡ଼ି ହୋଇ ରହୁଥିଲା । ଯାତ୍ରା ପର୍ବରେ ପୁରୁଷମାନେ ଉତ୍ସାହ ଆନନ୍ଦ ଭିତରେ କର୍ମ ପ୍ରେରଣା ପାଉଥିଲେ । ସେଥିପାଇଁ କୁହାଯାଇଛି "ଉତ୍ସବ ପ୍ରିୟାଃ ଖଳୁ ମନୁଷ୍ୟାଃ ।" ମଣିଷମାତ୍ରକେ ଉତ୍ସବ ପ୍ରିୟ । ଏଇ ମନ ସଜାଡ଼ିବା କଥାଟା ଆଗ ପଡୁ ।

ପ୍ରବାଦ ଅଛି- 'ଓଲେଇ ତୁଣ୍ଡରେ ଓଷା, ଉକୁଣି ମୁଣ୍ଡରେ ଖୋଷା ।' ଖାଣ୍ଟି ପଦଟିଏ । ଖୋଷା ପକାଇବା ଖୋଷା ପାରିବା ଆମ ସମାଜର ଚଳଣି ଭିତରେ ଗୋଟାଏ ବଢ଼ିଆ ପ୍ରଥା ଥିଲା । ଉପେନ୍ଦ୍ର ଭଞ୍ଜଙ୍କ ଲାବଣ୍ୟବତୀରେ ମାଲ୍ୟାଣୀର ଖୋଷା ବର୍ଣ୍ଣନାଠାରୁ ହୀରାପୁର ରାଣୀପୁର-ଝରିଆଲ ଚଉଷଠି ଯୋଗିନୀ, କୋଣାର୍କ ଓ ଭୁବନେଶ୍ୱରର ମନ୍ଦିରମାନଙ୍କରେ ନର୍ତ୍ତକୀ ମୂର୍ତ୍ତି, ଅଳସ କନ୍ୟାମାନଙ୍କର ଖୋଷା ଦେଖିଲେ ମନ ଖୁସି ହୋଇଯାଏ । ଫକୀର ମୋହନଙ୍କ ଉପନ୍ୟାସରେ ନାକଫୋଡ଼ିଆ ମାଆର ଚରିତ୍ର ଭାବିଲା ଭଳିଆ ବିଷୟ । ଆଗେ ଝିଅବୋହୂଙ୍କର ଖୋଷା ପକେଇବାକୁ ପେଷାଦାର ମାଲ୍ୟାଣିମାନେ ଥିଲେ । ଏବେ ତାହା ଭିନେ ବାଟ ଧଇଲାଣି । ଛାଡ଼ନ୍ତୁ । ତେବେ, ଆମର ଉପଲକ୍ଷ୍ୟ ହେଲା ଉକୁଣି ମୁଣ୍ଡିର ଖୋଷା ପକେଇବାର ହଟହଟା । ଯେତେ ଯତ୍ନରେ ଖୋଷା ପକେଇଥିଲେ କି ଉକୁଣିମାନେ ବାଳ ଭିତରେ ଥାଇ ବାରମ୍ବାର କାମୁଡ଼ିଲେ, ନଖ ଅଙ୍ଗୁଳିରେ ରାମ୍ପି ରାମ୍ପି ତାକୁ ବ୍ୟତିବ୍ୟସ୍ତ କରିବାକୁ ଅଲବତ୍ ପଡ଼ିବ । ତେଣୁ ଖୋଷାର ଶୋଭା ରହିପାରିବନି । ସେହିପରି ଖାଦ୍ୟ ଲାଳସା ଥିବା 'ଓଲେଇ' ଭଦ୍ର ମହିଳାଟି, ଉପବାସର ନିଷ୍ଠା ମାନିବା କଷ୍ଟ । ମନ ଖାଦ୍ୟ ପାଇଁ ଅସମ୍ଭାଳ ହୋଇଉଠିଲେ ଓଷାର ନିଷ୍ଠାକାଷ୍ଠା ପାଣି ଫାଟିଯିବ ହିଁ ଯିବ । ତଥାପି ମନକୁ 'ମଥଣ' କରିବା ପାଇଁ ସମାଜରେ ଅନେକ ଓଷା ବ୍ରତର ଭିଆଣ ହୋଇଛି । ତେବେ ସମାଜର ଖଟିଖିଆ ଲୋକେ ଅଛ କେଇଟା ଓଷା ବା ବ୍ରତ କରନ୍ତି ବା କରନ୍ତିନି । ପ୍ରବାଦ ଅଛି- 'ଧୋବା ଘରେ ନାଇଁ ବାର ବରତ, ମହଳ କାଟିଲେ ଖାଆନ୍ତି

ଭାତ ।’ ଆଗ ହେଲା ଭାତ । ସମୟରୁ ପ୍ରଥମ ଭାଗଟି ହେଉି ‘ଧନ୍ଦା’ ବା କାମର । କାମରୁ ଅବସର ପାଇଲେ ଓଷାବ୍ରତ ପୁନିଅଁ ପରବ । ଏଗୁଡ଼ିକ ହେଲା ସଂସ୍କୃତିର କଥା । ଓଡ଼ିଆ ସଂସ୍କୃତିରେ ଏଇ ପ୍ରଥା ଚଳି ଆସୁଛି ।

ଗାଁ ଗହଳିରେ ବୁଢା ଲୋକେ ବ୍ରହ୍ମଜ୍ଞାନମୂଳକ ଭଜନ ବେଳେ ବେଳେ ଗାଉଥିଲେ ଶଗଡ଼ିଆ ବି ‘ଓଲଟ ବୃକ୍ଷେ ଖେଳୁଛି ଏଲୋଟଣି ପାରା’ ଭଳିଆ ରହସ୍ୟବାଦୀ ଗୀତ ଗାଉଥିଲା । ଏବେ ସେ ସବୁ କ୍ରମେ ଅପ୍ରଚଳିତ ହୋଇ ଆସିଲାଣି । ସେଭଳି ଗୀତମାନଙ୍କରେ ମନକୁ ସମ୍ବୋଧନ କରି କେତେ କେତେ କଥା କୁହାଯାଏ । ଏପରି ଏକ ଗୀତରେ ଅଛି- ‘ମନ ହୋ ଚାହାଁ ଜ୍ଞାନ ନୟନ ବାଗେ ।’ ‘ମନ’ ହେଲା ଅସଲ । ତାକୁ ବାଗେଇଲେ ଜୀବନଟା ବାଗେଇ ଯିବ । ସେ ମନ ଯଦି ଜ୍ଞାନ ନୟନ ପାଇଲା, ଜ୍ଞାନ ନୟନ ବାଟେ ସବୁ ଦେଖିଲା, ତେବେ ତା ଆଗରେ ମହାନ୍‌ଦୃଶ୍ୟ ଦିଶିଯିବ । କଠଉପନିଷଦ୍ କହେ- ଶରୀର ହେଲା ରଥ, ବୁଦ୍ଧି ସେଇ ରଥର ସାରଥି ଓ ମନ ହେଉଛି ପଘା । ଏଇ ରଥର ରଥି ହେଉଛି ଆତ୍ମା । ଉଚ୍ଚତର ସଂସ୍କୃତିର ଏଇ ମହାନ୍ କଥା, ଲୋକ ସଂସ୍କୃତିର ଚଳଣି ଭିତରେ ଫୁଟିଛି ।

‘ତର ମିଳିଲେ ହରି ଭଜ’ କଥାଟି ଜଣେ ବୁଢା ଲୋକଙ୍କଠାରୁ ଶୁଣିଲି । ଭାଗବତରେ ଭଗବାନ କହିଛନ୍ତି- ‘ଦଣ୍ଡେ ନିମିଷେ କ୍ଷଣେ ଲେଶ, ମୋ ନାମ ଭଜିବ ଅବଶ୍ୟ ।’ ଏଇ ‘ଅବଶ୍ୟ’ କର୍ତ୍ତବ୍ୟ କଥାଟା ପାଇଁ ବେଶି ଗୁଡ଼ାଏ ସମୟ ଦେବାର ପରାମର୍ଶ ନାହିଁ । ଅଳ୍ପ, ସାମାନ୍ୟ ମାତ୍ର ସମୟ ହେଲେ ଚଳିବ । ତାହା ପୁଣି ‘ତର’ ମିଳିଲେ । ସେଇ ‘ତର’ ଯେତିକି ପାଇଁ ମିଳିଲା, ସେଇ ସେତିକି ଯଥେଷ୍ଟ । ଛୁଟି ନେଇ ହରି ଭଜିବାର ଆବଶ୍ୟକତା ନାହିଁ । କାମ ଭିତରେ ‘ତର’ ପାଇଲେ ହିଁ ଏଇ କାମ, ଓ ଏଭଳି କାମ କରାଯିବାର କଥା । ଧର୍ମ ଭଳିଆ ସଂସ୍କୃତିର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ କ୍ଷେତ୍ରରେ ମଧ୍ୟ ତାହା ପ୍ରଯୋଜ୍ୟ । ଯିଏ ଯାହା ଭାବୁ, ଯାହା କହୁ, ଆମ ଆଖିକି ଯାହା ଦିଶିଲା, କାନରେ ଯାହା ବାଜିଲା, ମନକୁ ଯାହା ଛୁଇଁଲା ସେତକ ଏଇଠି ଲେଖିଦେଲୁ ।







## ଗୁରୁ

ଦଳେ କହନ୍ତି ସୂର୍ଯ୍ୟ ପୃଥିବୀ ଚାରିପଟରେ ବୁଲୁଛି । ଆଉ ଦଳକ ମନା କରନ୍ତି । କହନ୍ତି- ପୃଥିବୀ ସୂର୍ଯ୍ୟର ଚଉକତି ବୁଲେ । ଧନବନ୍ତ କ୍ଷମତାବନ୍ତ ଲୋକଟିଏ ଭାବେ ସୂର୍ଯ୍ୟ ଓ ପୃଥିବୀ ଦୁହେଁଯାକ ତା' ଚାରିପଟେ ବୁଲନ୍ତି । ଢେର୍ ଲୋକ ତାହା ସମର୍ଥନ କରନ୍ତି । କହନ୍ତି- "ଏକଦମ୍ ଠିକ୍ ।"

ଆଜିକାଲି ଗୁରୁଙ୍କୁ ଫୁଟୁକି ମାରି ଉଡ଼େଇ ଦେବା ଲୋକ ଢେର୍ ବାହାରିଗଲେଣି । ସେ କାଳରେ ନଥିଲେ ନୁହେଁ । କିନ୍ତୁ ସଂଖ୍ୟା ଥିଲା କମ୍ । ଥରେ ଇନ୍ଦ୍ରସଭାରେ ଏପରି ଏକ ବ୍ୟାପାର ଅଭିନୀତ ହୋଇଗଲା । ମୁଖ୍ୟ ଭୂମିକାରେ ଥିଲେ ନିଜେ ଇନ୍ଦ୍ର ଏବଂ ତାଙ୍କ ଗୁରୁ ।

ଇନ୍ଦ୍ରଙ୍କର ଗୁରୁ ବିଚରା ବୃହସ୍ପତି । ସେ ପୁଣି ଦେବଗଣଙ୍କର ଗୁରୁ । ତାଙ୍କଠାରୁ ଜ୍ଞାନ ନେଇ ଦେବତାମାନେ ପ୍ରାଜ୍ଞ; ତାଙ୍କରି ପାଇଁ ସେମାନେ ସ୍ୱର୍ଗଭୁବନର ଅଧିପତି । ଅଥଚ ସେ ଦିନେ "ବିଚରାଟିଏ" ହୋଇ ଇନ୍ଦ୍ରସଭାରୁ ଭାଣ୍ଡିଆମୁହଁଟି ତଳକୁ କରି କରି ଫେରି ଆସିଥିଲେ । ହାୟରେ ଶିକ୍ଷକତା ! ଶିଷ୍ୟ ଶିକ୍ଷକ ଚାରିପଟେ ବୁଲିବ କି ଶିକ୍ଷକ ଶିଷ୍ୟ

ଚାରିପଟେ ବୁଲିବେ ସେହି କଥାଟା ଜାଣିବାକୁ  ବେଳେ ବେଳେ ସମର୍ଥ ହୁଏନି ବିଚରା ଶିକ୍ଷକ । ଛାଡ଼ନ୍ତୁ ସେ କଥା । ଏବେ ଅସଲ କଥାଟା ପଢ଼ନ୍ତୁ ।

ଦିନକର ଘଟଣା । ଦେବରାଜ ଇନ୍ଦ୍ର ସଭାରେ ବସିଛନ୍ତି । ସେ ସଭା କିଛି ସାଧାରଣ ସଭା ନୁହେଁ । ଦେବ ସଭା । ଚନ୍ଦ୍ର ମଣ୍ଡଳ ପରି ମନୋହର ଶ୍ୱେତଛତ୍ର ତଳେ ସିଂହାସନ ଉପରେ ବେଶ୍ ରାଜକୀୟ ଆଟୋପରେ ବସିଥିଲେ ଇନ୍ଦ୍ର । ଅଣଚାଶ ପବନ, ଅଷ୍ଟବସୁ, ଏକାଦଶ ରୁଦ୍ର, ଦ୍ୱାଦଶ ଆଦିତ୍ୟ ପ୍ରଭୃତି ଦେବଗଣ, ବିଶ୍ୱ ଦେବଗଣ, ଅଶ୍ୱିନି-କୁମାର ଦ୍ୱୟ, ସିଦ୍ଧ, ଚାରଣ, ଗନ୍ଧର୍ବଗଣ ତାଙ୍କୁ ଘେରି ରହିଛନ୍ତି । ବିଦ୍ୟାଧର, ଅପ୍‌ସରା, କିନ୍ନର, ପକ୍ଷୀ ଓ ସର୍ପମାନେ ସମସ୍ତେ ତାଙ୍କରି ସେବା ଓ ସ୍ତୁତି ଗାନରେ ଲୋଟି ପଡୁଥାନ୍ତି । ତାଙ୍କର ଯଶୋଗାନରେ ସଭାସ୍ଥାନ ମୁଖରିତ ହେଉଥାଏ । ଚାମର ବ୍ୟଜନ ଚାଲିଥାଏ । ଇନ୍ଦ୍ର ବସିଥାନ୍ତି ମଦମତ୍ତ ଭାବରେ । କୋଳରେ ତାଙ୍କର ଶ୍ରୀମତୀ ସଚିଦେବୀ ।

ଦର୍ପ କୁହନ୍ତୁ, ଅହଂ କୁହନ୍ତୁ ତାହା ଏପରି ଗୁଣ ଯେ ଟିକିଏ ଅନୁକୂଳ ପବନ ବାଜିଲେ ଏତେ ତେଜି ଉଠେ ଏତେ ଗୁଣ ହୋଇଯାଏ କୁହା ନ ଯାଏ ।

ଇନ୍ଦ୍ର ବସିଛନ୍ତି, ଖାଲି ଇନ୍ଦ୍ର ନୁହନ୍ତି ଦେବରାଜ ଇନ୍ଦ୍ର । ଏଠିସେଠି ନୁହେଁ ଦେବ ସଭାରେ । ସାଧାରଣ ଭାବରେ ନୁହେଁ, ରାଜକୀୟ ଭଙ୍ଗିରେ । ସେ କେମିତି ଦିଶୁଥିବେ ଭାବିଲେ ! ନିଶ ତାଙ୍କର ନାକର ଆଭିଜାତ୍ୟକୁ ଟେକି ଧରିଥିବ । ପାରା ଘୁମୁରିଲା ପରି ଗଳା ଫୁଲି ଉଠୁଥିବ ଗର୍ବରେ । ଆଉ ଆଖି ଏବଂ ଓଠରେ ବାଦଶାହୀ ଖିଆଲ ଉକୁଟି ଉଠୁଥିବ । ଏଣିକି ଆପଣ ଭାବନ୍ତୁ ଆଉ କ'ଣ କ'ଣ ହେଉଥିବ । ପୁଣି ତାଙ୍କ ମନ କେଉଁ ସ୍ଥିତିରେ ଥିବ । ବର୍ତ୍ତମାନ ଅନୁମାନ କରନ୍ତୁ । ଏମନ୍ତ ସମୟରେ ଦେବଗୁରୁ ବୃହସ୍ପତି ସଭା କକ୍ଷରେ ପ୍ରବେଶ କଲେ । ଅନନ୍ତ ପ୍ରଭାବ ଓ ବ୍ରହ୍ମଶକ୍ତି ସଂପନ୍ନ ମହାପ୍ରାଜ୍ଞ, ବୃହସ୍ପତି, ଯିଏ ଇନ୍ଦ୍ରଙ୍କ ସମେତ ସମସ୍ତ ଦେବତାଙ୍କର ଗୁରୁ ଏବଂ ଦେବଗଣ ଓ ଅସୁର ସମସ୍ତଙ୍କର ନମସ୍ୟ, ସେ ଦେବରାଜଙ୍କ ଆଖିକି ବଡ଼ ଦିଶିଲେ ନାହିଁ । କେମିତି ବା ଦିଶନ୍ତେ ? ବ୍ୟୋମଯାନ ଉପରୁ ବାର ମହଲା କୋଠାଟା ବି ତ ଛୋଟ ଦିଶେ ! ମିଜାଜ୍ ଉପରକୁ ଉପରକୁ ଉଠି ଉଠି ଗଲେ ସମସ୍ତେ କ୍ରମେ କ୍ରମେ ଛୋଟ ଛୋଟ ଦେଖାଯିବାରେ ବିସ୍ମିତ ହେବା କାହିଁକି ?

ପାଠ ପଢ଼ିଲା ବେଳେ ସିନା ଗୁରୁ । ସାର୍ଟିଫିକେଟ ହାସଲ କରି ବଡ଼ ଚାକିରିଟାଏ ପାଇଗଲା ପରେ ଆଉ କି ଗୁରୁ ? ମାର ତାଙ୍କୁ ଗୁଳି । ତା' ପରେ ଯଦି ବା ସେ ଆସିବେ; ଆସିବେ ତାଙ୍କ କାମରେ । ଏତେ ବଡ଼ ଲୋକଟା ପାଖକୁ ଯେତେବେଳେ ଆସିବେ; ସେତେବେଳେ କେବେ କେଉଁ କାଳରେ ଗୁରୁ ଥିଲେ ବୋଲି କ'ଣ ସେଇ ସମ୍ମାନ ପାଇବେ । ବରଂ ଛାତ୍ର ଥିବା କାଳରେ ଯେତିକି ସମ୍ମାନ ତାଙ୍କୁ ଦିଆହୋଇଯାଇଛି ସେତକ ସୁଧ ମୂଳ ସହ

ଫେରାଇ ଦେବା କଥା । ହୁଏତ ଅଳ୍ପ ଅଳ୍ପ କରି କିସ୍ତି ଅନୁସାରେ ଫେରାଇ ପାରନ୍ତି । କିନ୍ତୁ ତା' ନ କରି ଓଲଟି ସମ୍ମାନ ଦାବି କରିବା, ଆଉ ଥୋଡ଼ାଏ ସମ୍ମାନ ଅସୁଲ କରି ନେବାର ଲୋଭ କେତେ ଦୂର ସଂଗତ ଓ ସମୀଚୀନ । ଏହା ଅବା କେଉଁ ଆଡ଼ର ନ୍ୟାୟ । ଇନ୍ଦ୍ର ଏକ ଅଲଗା ମୁଡ୍‌ରେ ଥିଲେ । ତେଣୁ ବୃହସ୍ପତିଙ୍କୁ ଦେଖି ସିଂହାସନରୁ ଉଠିଲେ ନାହିଁ । ଆସନ ଦେଲେ ନାହିଁ । ନମସ୍କାର କଲେ ନାହିଁ । ଗୁରୁ ବିଚରା କ'ଣ କରିବେ ? ଆପଣାର ମାପଯନ୍ତ୍ରରେ ମାପି, ଜାଣି ପାରିଲେ ଯେ ଶିଷ୍ୟଙ୍କର ଚିତ୍ତବିକାର ଓ ଐଶ୍ୱର୍ଯ୍ୟର ଗର୍ବ ହୋଇଯାଇଛି । କାହାକୁ କିଛି ନକହି ଚୁପ୍ ହୋଇ ଘରକୁ ଫେରିଗଲେ ।

ବୃହସ୍ପତି ସିନା ଚାଲିଗଲେ । ଇନ୍ଦ୍ରଙ୍କ ମନରେ ଦକା ପଶିଲା । ଏକା ମାଘକେ ଶୀତ ଯାଏ ନାହିଁ । ଏତେ ବଡ଼ ଲୋକଙ୍କୁ କରଛଡ଼ା କଲେ ସ୍ୱର୍ଗରାଜ୍ୟ ସମ୍ଭାଳିବା ଏବଂ ଅସୁରଙ୍କୁ ଜିଣିବା ଅସମ୍ଭବ ବ୍ୟାପାର ହେବ । ଇନ୍ଦ୍ର ଧାଇଁଲେ ବୃହସ୍ପତିଙ୍କ ଘରକୁ । ବୃହସ୍ପତି ପ୍ରବଳ ମାୟା ପ୍ରଭାବରେ ଅଦୃଶ୍ୟ ଭାବରେ ରହିଗଲେ । ଇନ୍ଦ୍ରଙ୍କ ବାହୁଡ଼ା ପଥଟି ପିଛିଳ । ଗୁମରଟି ପଦାରେ ପଡ଼ିଗଲା । ଅସୁରମାନେ ଜାଣି ପକାଇଲେ । ସେଇଠୁ ଚାଲିଲା ଦେବତା ଓ ଅସୁରଙ୍କ ମଧ୍ୟରେ ଘମାଘୋଟ ଯୁଦ୍ଧ। ଏଥରକ ଦେବଗୁରୁ ବୃହସ୍ପତି ଅବସର ବାସରେ ମଉନବ୍ରତ ଅବଲମ୍ବନ କରି ଉଦାସ ଓ ନିର୍ଲିପ୍ତ ରହିଗଲେ । ଦେବତାମାନେ ପ୍ରମାଦ ଗଣିଲେ ।

ଅସୁରମାନେ ଶୁକ୍ରାଚାର୍ଯ୍ୟଙ୍କର ଅନୁଗତ ଥିଲେ । ଶୁକ୍ରାଚାର୍ଯ୍ୟ ସେମାନଙ୍କର ଗୁରୁ । ତାଙ୍କ ପାଖରେ ମୃତ ସଂଜୀବନୀ ମନ୍ତ୍ର । ସବୁ ବିପଦ ଆପଦରେ ବାଟ ବତାଇଦେବେ । ଆପଣାର ତପୋଲବ୍ଧ ତେଜ ଓ ଜ୍ଞାନରେ ଶିଷ୍ୟମାନଙ୍କୁ ତେଜୋଦୀପ୍ତ କରିବାପାଇଁ ଗୁରୁ ଶୁକ୍ରାଚାର୍ଯ୍ୟ ଆଗଭର । କିନ୍ତୁ ଦେବତାମାନେ ସେତକ ହରାଇଥିଲେ । ସେଥିପାଇଁ ଏଥରକ ଲଢେଇରେ ଜିତାପଟ ହେଲା ଅସୁରମାନଙ୍କର । ଦେବତାମାନେ ଧାଇଁଲେ ବ୍ରହ୍ମାଙ୍କ ପାଖକୁ । ଟିକିଏ କଳ୍ପନା କଲେ କେମିତି ଦିଶୁଥିବ ?

ବ୍ରହ୍ମା ବୁଢ଼ା ଲୋକ । ପଦ୍ମଫୁଲ ଉପରେ ବସି ବେଦ ପଢୁଥିବେ । ଅଥବା ଆଉ•କେଉଁ ଅବସ୍ଥାରେ ଥିବେ । ତାଙ୍କ ମୁହଁରୁ ୱାଜିବ୍ କଥା ବାହାରିବା ସ୍ୱାଭାବିକ । ସେ ଯାହା ଯାହା କହିଲେ ସେତକ ଜଗନ୍ନାଥ ଦାସଙ୍କ ଭାଗବତରୁ ଉତାରି ପକଉଛୁ । ଏଇ ପଢ଼ନ୍ତୁ-

ବ୍ରହ୍ମା କହୁଛନ୍ତି-

'ହେ ଦେବ ଶୁଣ କହୁଁ ଆମ୍ଭେ ।
ଅତ୍ୟନ୍ତ ମନ୍ଦ କଲ ତୁମ୍ଭେ ।।
ବ୍ରହ୍ମିଷ୍ଠ ଦାନ୍ତ ଯେ ବ୍ରାହ୍ମଣ ।
ତାହାଙ୍କୁ କଲ ଅବଜ୍ଞାନ ।।

ତୁମ୍ଭଙ୍କୁ ସେ ପାପ କାରଣେ ।
ତେଣୁ ଜିଣିଲେ ଶତ୍ରୁଗଣେ ।।
ତୁମ୍ଭଙ୍କୁ ନ ଜିଣନ୍ତି ବାଦେ ।
ଏବେ ଜିଣିଲେ ଅପ୍ରମାଦେ ।।
ହେ ଇନ୍ଦ୍ର ଶୁଣ ସାବଧାନେ ।
ଗୁରୁଙ୍କୁ ଲଘିଂଲ ଅଜ୍ଞାନେ ।।
ଆଚାର୍ଯ୍ୟ ଭଜି ଦୈତ୍ୟ ଗଣ ।
ଲଭିଲେ ଅମର ଭୁବନ ।।'

ତା' ପରେ ଇନ୍ଦ୍ର ବ୍ରହ୍ମାଙ୍କ ସହିତ ସଲା କରି ଅନ୍ୟାନ୍ୟ ଦେବତାଙ୍କ ସହିତ ଧାଇଁଲେ ବିଶ୍ୱରୂପଙ୍କ ପାଖକୁ । ବୃହସ୍ପତିଙ୍କ ସ୍ଥାନରେ ବିଶ୍ୱରୂପଙ୍କୁ ମୁକରିର୍ କରିବାର ମନ୍ତ୍ରଣା ଓ ଯୋଜନା ଚାଲିଲା ।

ବିଶ୍ୱରୂପ ଯୋଗ୍ୟ ଓ ପାଠୁଆ ଲୋକ । ତପସ୍ୟା କରିବାରେ ବ୍ୟସ୍ତ ଥାଆନ୍ତି । ଦେବତାମାନଙ୍କ କଥା ଶୁଣି କହିଲେ- 'ବାବୁ ମୋର ଚାକିରି ବାକିରି ଦରକାର ନାହିଁ । ଏଗୁଡ଼ାକ ଶିଳଞ୍ଛ ବୃତ୍ତି । ମୁଁ ମୋ ତପସ୍ୟାରେ ବ୍ୟସ୍ତ । ତମ ବୋଲ ମାନି ପାଠ ପଢାଇବା ବା ଟିଉସନ୍ କରିବାକୁ ମୋର ବଳ ନାହିଁ କି ବେଳ ନାହିଁ ।' ଆମେ ଅବଶ୍ୟ ଟିକେ ଅତିରଞ୍ଜିତ କରି କଥାଟା କହିଦେଉଛୁ । ଆପଣମାନେ ଜଗନ୍ନାଥ ଦାସଙ୍କ କଥା ଶୁଣନ୍ତୁ । ସେ ତାଙ୍କ ଭାଷାରେ ଘଟଣାଟି ବର୍ଣ୍ଣନା କରିଛନ୍ତି-

'ମୁନି ବିଶ୍ୱରୂପ ହସିଲେ ।
ଦେବତା ମାନଙ୍କୁ କହିଲେ ।।
ଭୋ ଦେବଗଣେ କହୁଁ ଶୁଣ ।
ଆଚାର୍ଯ୍ୟ କାର୍ଯ୍ୟ ଦୋଷ-ଗୁଣ ।।
ନିନ୍ଦିତ କାର୍ଯ୍ୟ ପୌରହିତ୍ୟେ ।
କିମ୍ପା ଆରାଧ ତୁମ୍ଭେ ମୋତେ ।।
ହେ ଅଧୀଶ୍ୱର ତୁମ୍ଭେ ଶୁଣ ।
ଅର୍ଥେ ମୋ ନାହିଁ ପ୍ରୟୋଜନ ।।

କିମ୍ବାଇ ତୁଚ୍ଛ ବୁଦ୍ଧି କରି ।

ପୁରୋହିତ ପଣ ଆଚରି ॥'

ଯାହାହେଉ ବହୁତ କୁହାବୋଲା ପରେ ସେ ମଙ୍ଗିଲେ । ଦେବତାମାନଙ୍କୁ ବହୁକଷ୍ଟରେ ଗୁରୁ ଜଣେ ମିଳିଗଲେ । ବୃହସ୍ପତିଙ୍କ ଇସ୍ତଫା ପରେ ଖାଲି ପଡ଼ିଥିବା ସ୍ଥାନ ପୂରଣ ହେଲା ।

ବିଶ୍ୱରୂପ ଉଦାରଚେତା । ଗୁରୁଭଳି ଗୁରୁ । ସେ ଇନ୍ଦ୍ରଙ୍କୁ ବୈଷ୍ଣବ ବିଦ୍ୟା ଦେଲେ । ନାରାୟଣ ମନ୍ତ୍ର ଦେଲେ । ଇନ୍ଦ୍ର ତାଙ୍କରି ବଳରେ ଅସୁରମାନଙ୍କୁ ହଟାଇ ଦେଲେ । କିନ୍ତୁ ବିଚରା ଗୁରୁ ବିଶ୍ୱରୂପ ପାଇଲେ କ'ଣ ? ଟିକିଏ ଧୀର ଚିତ୍ତ ସ୍ଥିର ବୁଦ୍ଧି ହୋଇ ଘଟଣାଟା ଶୁଣନ୍ତୁ ।

ଇନ୍ଦ୍ରଙ୍କ ମତିଗତି କଥା ଜଣେଇଜଣା । ସେକଥା ଆଗରୁ ବୟାନ କରାଯାଇଛି । ତାଙ୍କ ପାଇଁ ଯଥାଯଥ ବିଶେଷଣଗୁଡ଼ିକ ହେଲା- ମଦମତ୍ତ, ଭୟଗ୍ରସ୍ତ, ଅକୃତଜ୍ଞ, ସନ୍ଦେହୀ । ଏପରି ଯେଉଁ ଇନ୍ଦ୍ର ସେ ବିଶ୍ୱରୂପଙ୍କୁ ଯଜ୍ଞ ସ୍ଥଳରେ ହତ୍ୟା କଲେ । ତା ପରେ ପରିଣତିଟା କ'ଣ ହୋଇଥିବ ଭାବି ପାରୁଛନ୍ତି ।

ବିଶ୍ୱରୂପଙ୍କ ପିତା ତ୍ୱଷ୍ଟା । ସେ ଇନ୍ଦ୍ରଙ୍କ କାଣ୍ଡ ଦେଖି କ୍ଷୁବ୍‌ଧ ହେଲେ । ଯଜ୍ଞାନଳରୁ ବୃତ୍ର ବୋଲି ଗୋଟିଏ ଅସୁରକୁ ଜାତ କଲେ । ଲାଗିଲା ଇନ୍ଦ୍ର-ବୃତ୍ରାସୁର ସମର । ବୃତ୍ରଙ୍କୁ ଜିଣିବା ଦେବତାମାନଙ୍କ ପକ୍ଷରେ ଅସମ୍ଭବ ହେଲା । ତାଙ୍କର ଗଦାଘାତରେ ଇନ୍ଦ୍ରଙ୍କର ହସ୍ତୀ ଐରାବତ ରକ୍ତ ଉଦ୍‌ଗୀରଣ କରି ପଡ଼ିଗଲା । ଦେବତାମାନେ ନିରାଶ୍ରୟ । ଇନ୍ଦ୍ର ନିରାଶ୍ରୟ । ସେତେବେଳେ ତାଙ୍କର ଚିତ୍ତ ବିଷର୍ଣ୍ଣ । ଶକ୍ତି ତେଜ ସବୁ ମଉଳି ପଡ଼ିଛି । ଏହି ଅବସ୍ଥାରେ ବୃତ୍ର ଇଚ୍ଛା କରିଥିଲେ ଇନ୍ଦ୍ରଙ୍କୁ ମାରିଦେଇଥାନ୍ତେ । ସେ କିନ୍ତୁ ତାହା କଲେ ନାହିଁ । କହିଲେ- "ହେ ! ଇନ୍ଦ୍ର, ମୋର ବଡ଼ ଭାଇ ବିଶ୍ୱରୂପ ଆତ୍ମଜ୍ଞାନସମ୍ପନ୍ନ ବ୍ରାହ୍ମଣ ଥିଲେ । ତୁମେ ତାଙ୍କୁ ଗୁରୁପଦରେ ବରଣ କରିଥିଲ । ସେ ତୁମର କାର୍ଯ୍ୟ ସଂପାଦନ କଲେ । ତୁମେ ତାଙ୍କ ଉପରେ ବିଶ୍ୱାସ ସ୍ଥାପନ କରିଛ । ମନେରଖ ତୁମେ ତାଙ୍କୁ ବିନା ଅପରାଧରେ ମାରିଛ । ତୁମେ ବ୍ରହ୍ମହତ୍ୟାକାରୀ ଓ ଗୁରୁ ହତ୍ୟାକାରୀ । ସଂପଦ, ଲଜ୍ୟା, ଦୟା, କୀର୍ତ୍ତି ଏ ସମସ୍ତ ତୁମକୁ ଛାଡ଼ିଯାଇଛି । ତୁମେ ଆତ୍ମ କୃତକର୍ମଦୋଷେଣ ରାକ୍ଷସମାନଙ୍କ ନିକଟରେ ସୁଦ୍ଧା ନିନ୍ଦନୀୟ ହୋଇପଡ଼ିଛ । ମୁଁ ଶୂଳଦ୍ୱାରା ତୁମର ବକ୍ଷ ବିଦୀର୍ଣ୍ଣ କରିବି । ଅଗ୍ନି ତୁମର ଶରୀର ସ୍ପର୍ଶ କରିବ ନାହିଁ । ଗୃଧମାନେ ଅତି କଷ୍ଟରେ ତୁମର ଶରୀର ଭକ୍ଷଣ କରିବେ ।" ଏକଥାଗୁଡ଼ିକ ଇନ୍ଦ୍ରଙ୍କୁ କିପରି ଲାଗିଥିବ ? ସେ ଯାହା ଲାଗୁ ବିଚରା ଗୁରୁ ତ ଦେଖିବାକୁ ନାହାନ୍ତି ।

ବୃତ୍ରଙ୍କର ମୃତ୍ୟୁ ଭୟ ନ ଥିଲା । ସେ ଜାଣିଥିଲେ ଇନ୍ଦ୍ର ଦଧିଚିଙ୍କର ହାଡ଼ରେ ବଜ୍ର ପାଇଛନ୍ତି । ବିଷ୍ଣୁଙ୍କ ଅନୁକମ୍ପା ଆଣିଛନ୍ତି । ତେଣୁ ସେ ଇନ୍ଦ୍ରଙ୍କୁ ବାରମ୍ବାର କହିଛନ୍ତି- 'ମୁଁ ତୁମର ଶତ୍ରୁ ।

ତୁମରି ସମ୍ମୁଖରେ ଠିଆ ହୋଇଛି । ତୁମେ ମୋତେ ମାରିପାର । ତୁମେ ସେପରି କରିପାରିଲେ ମୁଁ ମୋର ଶରୀରକୁ ଶୃଗାଳ, କୁକୁର ପ୍ରଭୃତିଙ୍କୁ ଉପହାର ସ୍ୱରୂପ ଦେବି । ଭଗବାନଙ୍କ ପଦଧୂଳି ପାଇପାରିବି ।' ପୁଣି ଇନ୍ଦ୍ରଙ୍କୁ ମନେ ପକାଇ ଦେଇଛନ୍ତି- 'ତୁମ ପାଖରେ ବଜ୍ର ଅଛି । ସେଥିରେ ମୋତେ ମାର । ଏ ଗଦା କିଛି କାମ ଦେବ ନାହିଁ । ଯେପରି କୃପଣ ନିକଟରେ ଅର୍ଥ ଯାଚନା କଲେ ତାହା ବିଫଳ ହୁଏ । ସେହିପରି ତୁମର ଗଦା ବିଫଳ ହୋଇଛି । କିନ୍ତୁ ଶ୍ରୀହରିଙ୍କ ତେଜ ଏବଂ ଦଧିଚିଙ୍କ ତପୋବଳରେ ତୀକ୍ଷ୍ଣ ଏଇ ବଜ୍ର ସେପରି ହେବ ନାହିଁ । ତାକୁ ବ୍ୟବହାର କରିପାର ।' କିନ୍ତୁ ଦେବରାଜ କ'ଣ ଏଥିରେ ଲଜ୍ଜିତ ହୋଇଥିଲେ ?

ବୃହସ୍ପତିଙ୍କୁ ଆଉ ଜଣେ ଛାତ୍ର ବଡ଼ ହଟହଟାରେ ପକାଇ ଦେଇଥିଲେ । ସେଇଟା ଗୋଟାଏ ବଡ଼ ଅପରାଧ ଓ ଅପମାନ କଥା । ବୃହସ୍ପତି ଇନ୍ଦ୍ରଙ୍କଠାରୁ ଅପମାନ ପାଇ ମଧ୍ୟ ତାଙ୍କୁ ଅଭିଶାପ ଦେଇନାହାନ୍ତି । କେବଳ ସ୍ଥାନ ଛାଡ଼ି ଚାଲି ଆସିଛନ୍ତି । ତାଙ୍କ କାମରେ ଆଗୁଆ ହୋଇ ବାହାରି ନାହାନ୍ତି । ବେଶ୍ ଏତିକି । କିନ୍ତୁ ଏ ଘଟଣା ସମ୍ଭାଳି ପାରି ନାହାନ୍ତି । ଅଭିଶାପ ଦେଇଛନ୍ତି । ଘଟଣାଟା ବଡ଼ ଜଘନ୍ୟ । ସଂକ୍ଷେପରେ କହୁଛୁ ।

ବୃହସ୍ପତିଙ୍କ ପତ୍ନୀ ତାରା । ସେ ଦେଖିବାକୁ ଭାରି ସୁନ୍ଦରୀ । ଚନ୍ଦ୍ର ବୃହସ୍ପତିଙ୍କ ପାଖରେ ପାଠ ପଢୁ ପଢୁ ତାରାଙ୍କ ଉପରେ ଆଖି ପକାଇଲେ । ତାଙ୍କର ଅପରୂପ ରୂପ ଲାବଣ୍ୟରେ ମୁଗ୍ଧ ହୋଇ ପଡ଼ିଲେ । ଆଗପଛ ବିଚାରି ପାରିଲେ ନାହିଁ । ତାରାଙ୍କୁ ହରଣ କଲେ । ବିଚରା ବୃହସ୍ପତି କରିବେ କ'ଣ । ଦେବତାମାନଙ୍କ ନିକଟରେ ଫେରାଦ୍ କଲେ । ଦେବତା ଓ ଋଷିମାନେ ଚନ୍ଦ୍ରଙ୍କୁ ବହୁତ ବୁଝାଇଲେ । କହିଲେ- ଗୁରୁଙ୍କୁ ତାଙ୍କ ସ୍ତ୍ରୀଙ୍କୁ ଫେରାଇ ଦିଅ । ବଡ଼ ଅପରାଧ କରିଛ । କିନ୍ତୁ ଚନ୍ଦ୍ର ଅବୁଝା । ମୋଟେ ମଙ୍ଗିଲେନି । ରୁଦ୍ର ଏଡ଼େ ବଡ଼ ଅପକର୍ମ ସମ୍ଭାଳିପାରିଲେ ନାହିଁ । କ୍ଷୁବ୍ଧ ହେଲେ । ବୃହସ୍ପତିଙ୍କ ପକ୍ଷ ନେଇ ଚନ୍ଦ୍ରଙ୍କ ସହିତ ଲଢ଼ାଇ କରିବାକୁ ଆଗେଇ ଆସିଲେ । ଅବସ୍ଥା ସଂଗୀନ୍ ହେଲା । ଭାବି ବିପଦର ଆଶଙ୍କାରେ ସମସ୍ତେ ତ୍ରାହି ତ୍ରାହି ଡାକିଲେ । ବ୍ରହ୍ମା ଆଉ ଚୁପ୍ ରହିପାରିଲେ ନାହିଁ । ଚନ୍ଦ୍ରଙ୍କ ପାଖରୁ ତାରାଙ୍କୁ ନେଇଆସି ବୃହସ୍ପତିଙ୍କ ଜିମା ଛାଡ଼ି ଦେଇଗଲେ । କିନ୍ତୁ ତାରା ସେତେବେଳକୁ ଗର୍ଭବତୀ । ସେଇ ଗର୍ଭରୁ ଯେଉଁ ସନ୍ତାନ ଜନ୍ମ ହେଲେ ତାଙ୍କର ନାମ ବୁଧ । ବୃହସ୍ପତି ଚନ୍ଦ୍ରଙ୍କ କାର୍ଯ୍ୟରେ କ୍ଷୁବ୍ଧ ହୋଇ ତାଙ୍କୁ ଅଭିଶାପ ଦେଇଥିଲେ । ସେହି ଅଭିଶାପରେ ଚନ୍ଦ୍ରକଳାର କ୍ଷୟ ଘଟିଲା ।

ଚନ୍ଦ୍ର କିଛି ଊଣା ନୁହଁନ୍ତି । ସେ ରାହୁ ପାଟିରୁ ଗଳିପଶି ଖାଲି ଯେ ଜୀବନ ବଞ୍ଚାଇଥିଲେ ସେତିକି ନୁହେଁ, ଗୋଲ୍ ପୋଷ୍ଟ ଭିତର ଦେଇ ଫୁଟ୍‌ବଲ୍ ଗଳି ପଳାଇଲା ଭଳି ଜିତାପଟ୍

ନେଇଥିଲେ । ଠେକୁଆ ବ୍ୟାଜ୍ ଝୁଲାଇ ଶଶାଙ୍କ ନାମ ନେଲେ ଅନ୍ୟ ଏକ ଘଟଣାରେ । ସେ କେତେ କେତେ କଥା ପାର୍ କରିଦେଲାବାଲା । ଏହି କଳାର କ୍ଷୟ ବୃଦ୍ଧିରେ କ'ଣ ବା ନିହାଲ୍ ହୋଇଗଲା । ସେଇ ରୁଦ୍ର ଯିଏ ତାଙ୍କ ସାଙ୍ଗରେ ଲଢେଇ କରିବାକୁ ବାହାରିଥିଲେ, ଖୋଦ୍ ସେହି ରୁଦ୍ର ଚନ୍ଦ୍ରଙ୍କୁ ମୁଣ୍ଡେଇଲେ । ତାଙ୍କ ନାଆଁ ହେଲା ଚନ୍ଦ୍ରଶେଖର । ଆହା- ବୃହସ୍ପତି । ବିଚରା ଗୁରୁଟି । ତାଙ୍କ ହାତରେ କ'ଣ ହେବ । ଅପମାନ ପାଇଲେ ରାଗି ରୁଷି ପଳେଇବେ । ଅନ୍ୟାୟ ଅତ୍ୟାଚାର ହେଲେ ବାର ଲୋକଙ୍କ ପାଖରେ ଗୋଡ଼ଭାଙ୍ଗି ଠିଆ ହୋଇ ଫେରାଦ୍ କରିବେ । ଖୁବ୍ ହେଲେ ରାଗିଯାଇ ଅଭିଶାପ ଦେଇଦେବେ । ବେଶ୍ ଏଇ ତ । ଶିଷ୍ୟ ଯଦି ପାଠ ହାସଲ କରି ପାଞ୍ଚ ପଚିଶିରେ ଗଣା ହେବେ, ଫୁଲମାଳଟିଏ ପାଇବେ । ସେଥିରୁ କ'ଣ ଗୁରୁଙ୍କୁ ପାଖୁଡ଼ାଏ ମିଳିବ ? ବିଚରା ଗୁରୁ ଯେଉଁଠି ସେଇଠି ।







## ନିଦ୍ରାଦେବୀ

କୋଚିଲାମୂଳରୁ ଆରମ୍ଭକରି ବରଗଛ କୋରଡ଼ ଯାଏ- ପାହାଡ଼ପର୍ବତର ଖୋଲିରୁ ଆରମ୍ଭ କରି ହଗୁରାବୋଉର ଗମ୍ଭିରୀଘରଠଣାଯାଏ, ପୁଣି ପ୍ରଧାନ ଅପ୍ରଧାନ ରାସ୍ତା କଡ଼ରୁ ଆରମ୍ଭକରି ପ୍ରସିଦ୍ଧ ଅପ୍ରସିଦ୍ଧ ମନ୍ଦିର ଅବା ତା'ର ପାର୍ଶ୍ୱ ବା କାନ୍ଥ ଯାଏ; କେଉଁଠି କେତେ ରଙ୍ଗଢଙ୍ଗରେ- କିସମ କିସମ ନାଁ ନେଇ ଦେବୀମାନେ ନ ବସିଛନ୍ତି। କୋଚିଲାଇରୁ କାକଟାଇ, ଭୁଆସୁଣୀରୁ ଭୁବନେଶ୍ୱରୀ, ବିମଳାଇରୁ ବିରଜା, ଅଦିତିରୁ ଅପରାଜିତା, ପାର୍ବତୀରୁ ଭବାନୀ- ଏମିତି କେତେ ଯେ କେତେ ତାଙ୍କର ନା, ପୁଣି ବେଦ, ପୁରାଣ, ଆଖ୍ୟାୟିକାରୁ ଲୋକ କଥା ଏବଂ ଓଷା ବ୍ରତର ଗୀତ ଓ ଜଣାଣ ଭଜନ ମାନଙ୍କରେ କେତେ ଯେ କେତେ ମହିମା ଓ ଗୁଣ ଗରିମାର ବୟାନ, ତାକୁ ନୋଟ୍ କରିବାକୁ ବସିଲେ ଦିନ ଅଣ୍ଟିବନି। ରାତି ପାହିଯିବ। ଏଇ ଖାଣ୍ଟି ଅସଲି ଦେବୀମାନଙ୍କ ଛଡ଼ା, ଆମ ଘର, କଚେରି, ଆସିମେଳି ବା ବିଧାନସଭା, ପାର୍ଲିଆମେଣ୍ଟ ଇତ୍ୟାଦି ଇତ୍ୟାଦିରେ ଯେଉଁ ଦେବୀ ସଂଜ୍ଞା ଧାରିଣୀମାନେ ଅଛନ୍ତି, ସେମାନଙ୍କୁ  ଛାଡ଼ିଦେଲେ ମଧ୍ୟ, ହିସାବ ସହଜେ ଖତମ ହେଉନି। ତେଣୁ ଏତେ ଅଡୁଆ ଭିତରକୁ ନପଶି ଆମେ ସବୁ ଦେବୀଙ୍କର ଯେ ସାର ନିଦ୍ରାଦେବୀ; ତାଙ୍କରି ବିଷୟରେ ବୟାନ କରିବା।

ଚଣ୍ଡୀରେ କୁହାଗଲା- 'ଯା ଦେବୀ ସର୍ବଭୂତେଷୁ ନିଦ୍ରାରୂପେଣ ସଂସ୍ଥିତା, ନମସ୍ତେସୈ ନମସ୍ତେସୈ ନମସ୍ତେସୈ ନମୋ ନମଃ' 'ଯେଉଁ ଦେବୀ ନିଦ୍ରାରୂପରେ ସକଳ ଘଟେ ବିରାଜି ଥାଆନ୍ତି, ସେଇ ଦେବୀଙ୍କୁ ନମସ୍କାର, ନମସ୍କାର, ନମସ୍କାର'- କୋଟି କୋଟି ନମସ୍କାର । ତେବେ ଯେଉଁ ଦେବୀ ଏସନ ସ୍ଥିତିରେ ଥାନ୍ତି, ସେଇ ମୂଳ ଦେବୀଙ୍କୁ ଖୋଜିବାକୁ ନ ଯାଇ ଆମେ ଖୋଦ୍ ନିଦ୍ରାଦେବୀଙ୍କ ଚରଣତଳେ ସଲାମ୍ ପରେ ସଲାମ୍ କୁଢେଇ ପକାଉଛୁ । ଆମେ କିବା ଛାର, କେଉଁ ଗାଈର ଗୋବର- କୋଉ ମଣିଷରେ ଗଣା ? ବୋଇଲା- 'ଠେକି କହିଲା ଠେକାକୁ ତୁ କୋଉ ଗହଣାରେ ଲେଖାକୁ' !

ଇଂରାଜୀ ସାହିତ୍ୟର ବଡଚାଟମାନେ ଜାଣନ୍ତି- କଲୋରିକ୍ ଜଣେ ଅଫିମିଆ କବି ଥିଲେ । ଆମ ଗାଁ ଗଣ୍ଡାରେ ଏକୁ ସେବନ କରୁଥିବା ଲୋକ ବି ଊଣା ନାହାନ୍ତି । ସେଇମାନେ କହନ୍ତି- 'ଅ ରେ ଅକଲବନ୍ଦୀ, ଫିରେ ଫିକରବାଜୀ; ମ ରେ ମସୁଧା', ଅଫିମ (ଏହାର କୋଡ୍‌ନାମ କଳା କୃଷ୍ଣ) ସେବା ନ କଲେ ଏମାନ ଆୟତ୍ତ ହୁଏ ନାହିଁ । କିନ୍ତୁ କୌଣସି କୌଣସି ହାକିମହୁକୁମାଙ୍କଠାରୁ ନେତା ବେପାରିଯାଏ ଦେଶଟାକୁ ଲାଞ୍ଚ, ମିଛ, ଦୁର୍ନୀତିରେ ବତୁରେଇ ବତୁରେଇ ସେବା କରି ଯାଉଛନ୍ତି ଯେ, ସେମାନଙ୍କୁ କହିଲା ବେଳକୁ କାହା ଜିଭ ଲେଉଟୁନି; କିନ୍ତୁ ଏହି କଳାକୃଷ୍ଣଙ୍କ ସେବକମାନଙ୍କ ପାଇଁ ସମସ୍ତଙ୍କର ଘୃଣା, ତିରସ୍କାର କେଉଁଠି କେଜାଣି ଖୁନ୍ଦିହୋଇ ଆଖି ଆଉ ଜିଭବାଟେ ପିଚିକିପଡୁଛି । ହେଲେ ଅଫିମର କରାମତି କମ୍ ନୁହେଁ । ଏଇ ପଦାର୍ଥରୁ ଟିକିଏ ଲେଖା ସେବା ନ କରିଥିଲେ ଗୋପାଳ ପ୍ରହରାଜ ଭାଷା କୋଷ ସାରିପାରିନଥାନ୍ତେ । ଏହା ଆମେ ଗଛରୁ ତୋଳିଆଣି କହୁନାହୁଁ; ସେ ନିଜେ ମାନିଛନ୍ତି । ଆଉ ମଧ୍ୟ କେତେ଼ କେତେ଼ ଲୋକ ଇଆରି ପାଇଁ ବହୁକଥା କରିଯାଇଛନ୍ତି । ଅବଶ୍ୟ କଲୋରିଜ୍ ଅଫିମ ନଖାଇଥିଲେ ବଡ଼କବି ହୋଇପାରିଥାନ୍ତେ କି ନାହିଁ ସେକଥା କହିବାକୁ ଆମେ ତାଙ୍କ ଜାତକ ଦେଖିନାହୁଁ । କିନ୍ତୁ ଏ କଥା କହିବାକୁ ଆମେ ଛାଡ଼ିବୁ ନାହିଁ ଯେ, ନିଦ୍ରାର ମହିମା ସିଏ ବୁଝିଥିଲେ । ସେଥିପାଇଁ ତାଙ୍କ କଳ୍ପନାର ସନ୍ତାନ ଆନ୍‌ସିଏଣ୍ଟ ମାରିନର୍, ଅନିଦ୍ରାରେ ସାଉଁଟିପାଉଁଟି କାଉଳିବାଉଳି ହୋଇ ନିଦ୍ରା ବିନା ଉନ୍ନିଦ୍ରଜୀବନର ଜ୍ୱାଳା ଭିତରୁ ମୁକୁଳି ଆସି ପଦୁଟିଏ ଗାଇଛି-

'Oh sleep! It is a gentle thing
Beloved from pole to pole,
To Mary Queen the praise be Given
She sent the Gentle sleep from Haven
That slid into my soul.'



'ଆହା ନିଦ,
କେ ବିନ୍ଧାଣି ତୋତେ ଯେ ଗଢ଼ିଲା
କେତେ ଧୀର ସ୍ଥିର ଆହା ସୁମଧୁର
ନହେଲେ କି ଏମେରୁରୁ ସେମେରୁ ପର୍ଯ୍ୟନ୍ତ
ଗୁଣ ତୋର ପ୍ରସରି ଥାଆନ୍ତା ।
ଧନ୍ୟ ଦେବୀ ମେରୀ ତୁମେ
ଧନ୍ୟ ତୁମ ନାମ
ନିଦ୍ରା ତୁମ ଅପୂର୍ବ ସୃଜନ
ସ୍ୱର୍ଗୁ ଅବତରି ଯାହା
ପ୍ରାଣେ ମମ ସଞ୍ଚରି ଆସିଲ !'

'ଭାବଗ୍ରାହୀ ରଘୁବୀର' ବି ଏମିତି ନିଦ୍ରାଦେବୀଙ୍କ ଭଳି ପୟର ବଢ଼ାଇ ଦେଇ ନଥିବେ । ଆମ ନିଦ୍ରାଦେବୀଙ୍କ ଭାବଗ୍ରାହୀପଣକୁ ସିଏ ଜମାରୁ ସରି ନୁହନ୍ତି । ଖାଲି ସୀତାଙ୍କୁ ବାହା ହେବାଲାଗି ଉଛନ୍ନ ହେଉଥିଲେ କି କଅଣ ବୋଲି ବହୁ ଟଣା ଓଟରା ପରେ ପାଦଟିକି ଧୀରିକିନି ବଢେଇଦେଲେ । କ'ଣ ନା ସିଏ ହେଲେ - ଭାବଗ୍ରାହୀ । ଇଏ 'ତୁ ହେଲୁ ଓକିଲ' ଭଳିଆ କଥା । ନିଦ୍ରାଦେବୀଙ୍କର ଯୋଉ ଭାବ, ତାକୁ ଇଏ କୋଉଠୁ ପାଇବେ ମ !- ସେଥିପାଇଁ ଜାଣିଲାବାଲାଏ, ଏଙ୍କ ଉପରେ କାଣ୍ଡେ ଲେଖାଏ ଲେଖି ଯାଇଛନ୍ତି ।

ସେକ୍ସପିଅରଙ୍କ ମାକ୍‌ବେଥର ଦୁର୍ଦ୍ଦଶା କିଏ ବୁଝେ ! ବିଚରା ଦୁଶ୍ଚିନ୍ତାରେ ଶୋଇ ନ ପାରି କେତେ ବିକଳ ହୋଇ କହିଛି-

'Me thought I heard a voice cry sleep no more !
Macbeth does murder sleep- the innocent sleep,
Sleep that knits up the raved sleave of care,
The death of each day's life, sore labour's bath,
Balm of hurt mind, great nature's second course,
Chief nourisher in life's feast.'

ମତେ କିଏ ଦୂରରୁ ଫୁକାରେ
'ଶୁଅନାହିଁ ଶୁଅନାହିଁ ଆଉ

କାରଣ ମାକବେଥ୍ ନିଦକୁ ଖୁନ୍ କରିଛି !’

ଆହା କେଡ଼େ ନିରୀହ ବିଚରା ନିଦ

କେତେ ଯନ୍ତ୍ରଣା ଦାଉରୁ ସେ ଆମକୁ ଉଦ୍ଧାର ନକରେ !

ଦୈନନ୍ଦିନ ଜୀବନର କେତେ କ୍ଳାନ୍ତି

କାନିପଣତରେ ତା’ର ପୋଛି ନଦେଇଚି !

କେତେ ଖଣ୍ଡିଆଖାବୁରା ମନରେ ସେ

ମଲମ ନବୋଳିଚି !

ଅଧମେ ତାରିବା ପାଇଁ ପ୍ରକୃତିର ଦ୍ୱିତୀୟ ସର୍ଜନା

ଜୀବନର ଭୋଜିଭାତ ମିଠାଲାଗେ ତାଆପାଇଁ ସିନା !

ନିଦ୍ରାଦେବୀଙ୍କ କରୁଣାରୁ କାଣିଚାଏ କମି ଆସିଲେ ବେଦନା ଯେମିତି ଖୁମ୍ପି ପକାଏ, ସହସ୍ର ଚିଲ ଶାଗୁଣା ବି ଏକାଥରକେ ଏମିତି ଖୁମ୍ପା ଖୁମ୍ପି ପାରିବେ ନାଇଁ । କିନ୍ତୁ ସବୁଠି ଓ ସବୁବେଳେ ଯେ ନିଦ୍ରାଦେବୀଙ୍କୁ ଆବାହନ କରାଯାଏ ତା’ ନୁହେଁ ।

କେଉଁଠି କେଉଁ ଛାତ୍ର ପରୀକ୍ଷା ପୂର୍ବଦିନ ରାତିରେ ଚା’, କଫି ତେଣ୍ଡି ସିଗାରେଟ ଇତ୍ୟାଦି ଢୋକି ଓ ଫୁଙ୍କି ନିଦ୍ରାଦେବୀଙ୍କୁ ‘ସ୍ୱସ୍ଥାନଂ ଗଚ୍ଛ’ ଶୁଣାଏ ତ, କେଉଁ ଅନିଦ୍ରା ରୋଗୀ ନିଦବଟିକା ଗିଳି ‘ଅତ୍ରାଗଚ୍ଛ’ କରାଏ । କିନ୍ତୁ ବାଲ୍ମିକୀମୁନିଙ୍କ କୁମ୍ଭକର୍ଣ୍ଣ ପରି ସୁଖୀ କିଏ ? ସେଇ କୁମ୍ଭକର୍ଣ୍ଣ ଜଣେ ଗୁରୁଦେବ ଲୋକ । ତାଙ୍କ ସାଥିରେ ହାତ ମିଳାଇବାକୁ ମନ ଧାଏଁ । ପାଟିରୁ ବାହାରି ଆସେ ‘ବାଃ ଗୁରୁଦେବ କୁମ୍ଭକର୍ଣ୍ଣ, କି ନିଧୋକା ନିଦ ତମେ ଶୋଇ ପାରୁଥିଲ ! କିନ୍ତୁ ହାୟ ତା’ ଉପରେ ଖଣ୍ଡେ ଥେସିସ୍ ଯାହା ଛାଡ଼ି ନ ଗଲ । ସେଇ ଦୋଷରୁ ତୁମେ ବାଲ୍ମିକୀମୁନିଙ୍କ ଚେସ୍‌ବୋର୍ଡ଼ରେ ପନ୍‌ଟିଏ ଭଳି ରହିଗଲ ସିନା । ତଥାପି ତୁମକୁ ଆମେ ସମ୍ମାନସୂଚକ ଡକ୍‌ଟରେଟ୍ ଦେବୁ । କାହିଁକି ନା, ଆମ ଦେଶର ଶାସନକଳ ତୁମ ଭଳି ରାଜଭ୍ରାତାଙ୍କଠାରୁ ଏଇ ଶୋଇପଡ଼ିବାର କଳାଟି ବେଶ୍ ଆୟତ୍ତ କରିନେଇ ବପୁବର୍ଦ୍ଧନ କରୁଛନ୍ତି ।’...କିନ୍ତୁ ଏ ବିଷୟରେ ବେଶିଗୁଡ଼ାଏ ବକ୍‌ବାଜି କରିବା ମନା ।

କୁହାଯାଏ, ନିଦ୍ରାଦେବୀ କିଛ ବୁଝନ୍ତିନି । କବି ସାରଳାଦାସ ସେଥିପାଇଁ ଗାଇଛନ୍ତି-

‘କ୍ଷୁଧା ନଜାଣଇ ମାଗୋ ଅଲଣା କି ଲୁଣି

ନିଦ୍ରା ନଜାଣଇ ମାଗୋ ଘର କି ମଶାଣି

ମୂର୍ଖ ନଜାଣଇ ମାଗୋ ଶାସ୍ତ୍ର ବାଟ କଥା
ପାଷାଣ୍ଡ ଜାଣିବ କାହୁଁ ପଣ୍ଡିତ ବ୍ୟବସ୍ଥା ।'

ନିଦ୍ରାଦେବୀ ଯେ ଖାଲି ଘର କି ମଶାଣି ଜାଣିପାରନ୍ତି ନାହିଁ ସେତିକି ନୁହେଁ । ଗୁରୁତ୍ୱପୂର୍ଣ୍ଣ ଫାଇଲ୍ କି ତମାଦି କରିଦବା ଭଳି ଫାଇଲ୍, ସେ କଥା ବି ସେ ଜାଣି ପାରନ୍ତି ନାହିଁ । ଅନେକ ସମୟରେ ଉଭୟଟି ଉପରେ କର୍ତ୍ତାଙ୍କୁ ଧୀର୍‌କିନି ଶୁଆଇ ଦିଅନ୍ତି । କି ଅପାର କରୁଣା ତାଙ୍କର ! ଅଝଟ ପିଲାଙ୍କୁ ଶୁଆଇବା ପାଇଁ ମା'ମାନେ ବୋଲନ୍ତି-

ଶୋଇପଡ଼ ଧନ ଦରିଦ୍ର ରତନ
ନିଶା ଡାକେ ସାଇଁ ସାଇଁ
ବାରିଆଡ଼େ କୋକ ଛାଡୁଛି ବୋବାଳି
କେଉଁ ପିଲା ଅଛି ଚେଇଁ

ଏତେ ଡରାଣରେ ଯଦି ଜାଗ୍ରତ ଅବସ୍ଥା ଜାହିର୍ ରହିଲା, ତେବେ ନିଦ୍ରାଦେବୀଙ୍କ ଆଶ୍ରୟ ଲୋଡ଼ା ପଡ଼େ । ତାଙ୍କ ସହିତ ବନ୍ଧୁବାନ୍ଧବ ସମ୍ପର୍କ ଯୋଡ଼ି ମାଉସି, ମାଉସି ଡାକି ଫୁସୁଲେଇବାକୁ ହୁଏ -

ନିଦମାଉସି ବୁଜିଦେନା କୁନା ଆଖି ଯୋଡ଼ିକ
ଯା'ର ହସରେ ଝରେ ମୁକୁତା ଆଉ କାନ୍ଦରେ ମାଣିକ ।

କିନ୍ତୁ ନିଦମାଉସି ସେଠିକି ସହଜରେ ଆସନ୍ତିନି । ମାତ୍ର କର୍ତ୍ତାମାନଙ୍କ ଦପ୍ତରକୁ 'ଭାବଗ୍ରାହୀ ରଘୁବୀର'ଙ୍କ ପରି ପୟର ବଢାଇ ଦିଅନ୍ତି । ଫାଇଲ୍‌ଟିମାନଙ୍କ ଉପରେ ସୁଆଇ ଦିଅନ୍ତି । ପୁଣି ବଛାବଛା ଫାଇଲ୍ ଉପରେ ତ ଘୋଡ଼ିପୋଡ଼ି ହୋଇ ଶୋଇପଡ଼ିବା ଜରୁରୀ । ତା' ନହେଲେ ଯଦି 'କୋକ'ର ନଜର ପଡ଼ିଯିବ, ସେ ଧରିନେବ ଯେ ଫାଇଲଗୁଡ଼ାକ ଚେଇଁ ରହିବେ, ତହିଁକି ପୁଣି ଗତିଶୀଳ ହେବେ କାହିଁକି ଯେ, ତାହା ଉପରେ ନିଦ୍ରାଦେବୀଙ୍କର ଆସ୍ଥାନ ଜମିବା ଦରକାର । ତାହା ହେଲେ ସେଗୁଡ଼ିକ ଭିତରେ ସାପ କି ବେଙ୍ଗ ଯାହା ଥିବେ, ସେମାନେ ବି ନିଦ୍ରାଦେବୀଙ୍କ ହାଓ୍ୱା ବାଜି ମୁହଁ ଜାକି ଶୋଇ ରହିବେ ।

ନିଦ୍ରାଦେବୀ ଯେତେବେଳେ ମଣିଷର ଶରୀର ଭିତରକୁ ଅବତରଣ କରି ଆସନ୍ତି, ସେ ଆଉ ଦେବୀଙ୍କ ପରି ଯେକୌଣସି ସ୍ଥାନ ବାଛି ନିଅନ୍ତି ନାହିଁ । ମଣିଷର ପକେଟକୁ ଉଷୁମ କଲାବାଲା ଲକ୍ଷ୍ମୀ ଠାକୁରାଣୀ ବସନ୍ତି କାନ୍ଧରେ, ଅକଲଦାୟିନୀ ମାତ ବୀଣାବଜାୟିନୀ

ସରସ୍ୱତୀ ପହଞ୍ଚିଲେ କଣ୍ଠରେ, କିନ୍ତୁ ନିଦ୍ରାଦେବୀ ଏ ସବୁକୁ ଛାଡ଼ି ବାଛିନେଲେ ଗୋଟିଏ ଅସଲ ଥାନ। ପିଲା ମାନଙ୍କର ନାଁ ଦିଆରେ ସେଇ ସ୍ଥାନଟିର ଗରିମା ଜଳଜଳ ହୋଇ ଦିଶେ। ସିଏ ପୁଣି କେମନ୍ତ ?

ମନେ ପକାନ୍ତୁ, ବଗୁଲିଆ କୁନି ପୁଅଟି କି ନାତିଟି ଆପଣଙ୍କର ଧାଇଁ ଆସି ସାମନାରେ ନଥ କିନି ଚକାପକାଇ ବସିପଡ଼ି, କୁଆଡୁ ମାରି ଆଣିଥିବା ପାନ ଖଣ୍ଡେ ଚୋବାଉଥିବ କି ଚକଲେଟଟିଏ କଳରେ ଜାକି ଥିବ ଆଉ ଝୁଲି ଝୁଲି ପଚାରୁଥିବ- 'କହିଲ ଦେଖି- ଏଇଠି ଅଛି, ଗାଁ ଚାରିପାଖ ବୁଲି ଆସିଛି।' ...ଆପଣ ହୁଏତ କହି ନପାରିଲେ ମାରିଦେବ ତାଳିଟାଏ- 'ହଁ। ହାରିଗଲ।' ଆଉ ଗୋଟାଏ କହ-

ଫାଟୁ ତ' ଫାଟୁ ଜନମ ଫାଟୁ
ଫାଟୁ ଦୁଇପାଖେ ବାଳ
ଶୋଇଥିଲେ ଫାଟୁ ବୁଜି ହୋଇଥାଏ
ବସିଥିଲେ ଦୁଇ ଫାଳ।

ଆପଣ ହେଜୁ ହେଜୁ ସିଏ ଠିଆ ହୋଇ ଟିକିଏ ନଇଁପଡ଼ି ମୁହଁ ହଲାଇ କହିଦେବ- 'ଏତିକି ଜାଣିପାରୁନ.. ଦି'ଟିଯାକର ନାଁ ହେଲା- ଆଖି।' ତା'ପରେ ସେ ଧାଇଁ ପଳାଇଯିବ, ଆପଣ ହିସାବ କରୁଥିବେ..କେମିତି ହେଲା! ତା'ପରେ ହସିଦେଇ କହିବେ ଆରେ ହେ..! କିନ୍ତୁ ଏଇ ଆଖିଟି ଉପରକୁ ନିଦ୍ରାଦେବୀ ଓହ୍ଲାଇ ଆସିଲା ବେଳେ ଆପଣ କି ଆରାମ ଅନୁଭବ କରୁଥା'ନ୍ତି! ନିଦ୍ରାଦେବୀଙ୍କର ସିଂହାସନାରୋହଣ ଓ ପରିତ୍ୟାଗବେଳେ କି ସୁନ୍ଦର ଭାବରେ ପତା ଦୁଇଟିରେ ତାହା ସୂଚିତ ହୁଏ। ପକ୍ଷ୍ମରେ କି ଚାମର ଚାଳନା! ପିଲାଙ୍କୁ ଏଇ ନିଦ୍ରାଦେବୀ ଅତି ସାନ ଅଥଚ ବଳିଷ୍ଠ ପରି ଜଣାଯିବାରୁ, ସେମାନେ କହନ୍ତି- 'ଏଡ଼ିକି ଟିକିଏ ଲିଟି, ସବୁକୁ ନିଏ ପିଟି'। ସତରେ ନିଦ୍ରାଦେବୀ ପହଞ୍ଚିଗଲେ ସବୁକଥା ଅପସରି ଯାଏ!

ସବୁ ଚିନ୍ତାରୁ ନିଜକୁ ବଞ୍ଚାଇବା ପାଇଁ ବଡ଼ ସାହା ହେଲେ ନିଦ୍ରାଦେବୀ। ପ୍ରାଣର ବେଦନାକୁ ଉପଶମ ପାଇଁ ସେ ବେଦନାନିଗ୍ରହରସ ଓ ଜୀବନର କ୍ଷତକୁ ଶୁଖାଇବା ପାଇଁ ମଇଲମ ପରି ଆସିଥାନ୍ତି। ସେଇ ନିଦ୍ରାଦେବୀଙ୍କୁ ଆମର ହରଘଡ଼ି ପ୍ରାର୍ଥନା-

'ହେ ନିଦ୍ରାଦେବୀ, ତୁଭେ ନମଃ। ତୋରି କୋଳରୁ ଆମର ଜନ୍ମ-ତୋରି କୋଳରେ ଆମର ବିଲୟ। ତୁହିଁ ଆମର ଜନନୀ ଓ ଜାୟା, ତୁଇ ଆମର ସବୁ - ତୋରିକୋଳ ହିଁ ଆମର ଭରସା ଓ ସେଇଠାରେ ହିଁ ଶାନ୍ତି।'

ମଶା କାମୁଡୁ, ଡାଉଁଶ ଦଂଶୁ, ଛାରପୋକ ହଇରାଣ କରୁ, ପେଟ ଭିତରେ ସାତରାଣ୍ଡ ସଦେଇ ସାନ୍ତରା ଡିଆଁ ମାରନ୍ତୁ, ହାଣ୍ଡିରେ-ମାଙ୍କଡ଼ସା ବସାକରୁ, ଲକ୍ଷ୍ମୀ ପକେଟ୍ ଓ ବାକ

ଛାଡ଼ି ହାଡ଼ିଆଣି କି ମାରୁଆଡ଼ି ଘରକୁ ଯା'ନ୍ତୁ । ଚୁଲିରେ ବିଲେଇ ଶୋଉ । ଯେଛାତା' ହୋଇଯାଉ ପଛକେ, ତୋ କୋଳରେ ଟିକିଏ ଆଶ୍ରା ମିଳୁଥାଉ ! ଏମନ୍ତ ସୁଦୟା ମାତ କର ନିଦ୍ରାଦେବୀ ।

ତୁ ଦୟା ନକଲେ ଦୁଗ୍ଧ ଫେନିଭ ଶଯ୍ୟାରେ ବି- ଉକୁନ୍ତୁରି ଲାଗେ-ପୁଣି ତୋ କୃପା କଣିକାରୁ ଟିକିଏ ଛିଞ୍ଚାଡ଼ି ହୋଇ ପଡ଼ିଲେ ଛାରପୋକଭର୍ତ୍ତି ଖଟିଆରେ ବି ଘୁଙ୍ଗୁଡ଼ିର ଡିଣ୍ଡିମ ବଜାଇ ଶୋଇହୁଏ । ଭଗବାନ ତୋ ପ୍ରସାଦ ପାଇ ସହସ୍ର ଫଣା ସାପ ଉପରେ ଶୁଅନ୍ତି, ତା' ତୁଳନାରେ ଛାରପୋକ କିବା ଜନ୍ତୁ ! ମା ନିଦ୍ରାଦେବୀ, ତୁ ଯେଉଁ ଘୁଙ୍ଗୁଡ଼ି ବଜାଉ ହୃଷିକେଶଙ୍କ ପାଞ୍ଚଜନ୍ୟ ବି ସେମିତି ବାଜେ ନାହିଁ । 'ଜୟତୁ ନିଦ୍ରାଦେବୀ ଜୟତୁ ମା ।'

ମା' ତୁ ବିପଦନାଶିନୀ, ତୁ ବିପଦବେଳେ ସରକାରଙ୍କୁ ଦୟାକରୁ ବୋଲି ଖବର କାଗଜ ବାଲା ଓ ସରକାର ବିରୋଧି ଲୋକେ କହନ୍ତି ।.... ତୁ କିନ୍ତୁ ଆମକୁ ଦୟାକରୁଥା ମା ।

ସରକାର ଯେ ନିରାକାର । ସେ ଯଦି ସତରେ ନିଦ୍ରାପ୍ରିୟ ହୋଇଥାନ୍ତି, ତେବେ ନିଦ୍ରାଦେବୀଙ୍କୁ ଭଜନ ଓ ସ୍ମରଣ କରିବା ଉଚିତ- ଯେପରିକି ନିଦ୍ରାଦେବୀ ସରକାରଙ୍କ ସହିତ, ସରକାରଙ୍କ ସମାଲୋଚକମାନଙ୍କୁ ମଧ୍ୟ ନିଜ କୋଳକୁ ଟାଣି ନିଅନ୍ତି ! ଅବୈତନିକ ଚାକିରି ପାଇଁ ସମ୍ମାନସୂଚକ ପାଉଣା ଦେବାବାଲା- 'ହେ ସରକାର ଏଇ ପରାମର୍ଶ ପାଇଁ ମତେ କିଛି ନଦେଲେ ବି ଏତକ ମାଗଣା; ଖାଆସେ ତୁମରି ପାଇଁ !.....ଜୟତୁ ନିଦ୍ରାଦେବୀ ଜୟତୁ ମା...... ।'



◆ ◆ ◆



## ଛି' ରୁ ଛି' ଛିକାର

ଛିରେ ଛୋକର ତୋ ମୁହେଁ ବୋକର

ତୋତେ କିଏ ମୋର ଚାହେଁରେ

ମୋ ଗୁଣ ମଣି ତୋଠଉ ସୁନ୍ଦର

ଚାକର ରଖିବ ତୋତେରେ . . . .

କୋଉ ପୁରୁଣା କାଳର ଓଡ଼ିଆ ସାମାଜିକ ଜୀବନ ଓ ପରିସ୍ଥିତି ଭିତରୁ ଉତୁରି ଆସିଥିଲା ଏହି ଲୋକଗୀତ ପଦକ । ପୁଣି ଲୋକବାଣୀରେ ଫିଟିଥିଲା ମନ ଅପସନ୍ଦ ଭାବନା-

ଛି' ଲୋ ଛତୁ

ପାଣି ପଡ଼ିଲେ ତୁ କେତେ ଫୁଟନ୍ତୁ ।

'ଛି' ଏହି ଉଚ୍ଚାରଣଟିରେ ଏତେ ଘୃଣା ଖୁନ୍ଦା ହୋଇ ରହିଛି ଯେ, 'ଛି' କହିଦେଲେ କୁକୁର ବି କୁଆଡ଼େ ଛ' ମାସ ଯାଏ ଦୁଆର ମାଡ଼େନି । ଏହି ଛି ରୁ ଉଦ୍ଭବ ହୋଇଛି- ଛି' ଛି' କାର । ନିନ୍ଦା ସୂଚକ ଧ୍ୱନି ।

ଆଗ କାଳରେ ଦେଉଳ ତୋଳିବା ଥିଲା ଗୋଟିଏ ମହତ କାମ । ଲୋକେ କହୁଥିଲେ: ନାଁ ଦୁଇ ପ୍ରକାରର; 'ଦେଉଳ ତୋଳିଲେ ନାଁ, ନ ହେଲେ ବାଟରେ ହଗିଲେ ନାଁ ।' ଦେଉଳ ତୋଳିଲେ ସୁନାମ ହେବ । ଲୋକେ ଧନ୍ୟ ଧନ୍ୟ କହିବେ । ମୁଣ୍ଡେଇ ବୁଲିବେ । ବଡ଼େଇ କହିବେ । ପ୍ରଶଂସା କରିବେ । ବାଟରେ ହଗିବାଟା ଦୁର୍ନାମ, ଅପନିନ୍ଦାର କଥା । ଲୋକେ ଦେଖିଲେ ଛି' ଛି'କାର କରିବେ । ଏପରି ସୁନାମ ଓ ଦୁର୍ନାମର ଚରମ ଦୃଷ୍ଟାନ୍ତକୁ ଘେନି କୌଣସି ଅନୁଭବୀ ମଣିଷ ତୁଣ୍ଡରୁ ଫିଟି ପଡ଼ି ଫୁଟିଆରା ହେଲା ଏବି ପ୍ରବାଦ ବାକ୍ୟଟି । କିନ୍ତୁ ଏହି ଛି' ଛି'କାର ଯେ କେଉଁଠି କେବେ ଗୋଟିଏ ଅଭିଯାନର ରୂପ ନେଇଥିଲା ସେ କଥାଟା ଜାଣି ନ ଥିଲି ।

୨୦୦୦ ମସିହା ଅଗଷ୍ଟ ମାସର କଥା । ବମ୍ବେରେ ଥିଲି । ଖବର କାଗଜ ପଢୁ ପଢୁ 'ଟାଇମ୍ସ ଅଫ୍ ଇଣ୍ଡିଆ' ଖଣ୍ଡିକ ହାତରେ ପଡ଼ିଲା । ଅଗଷ୍ଟ ୨ ତାରିଖ(ବୁଧବାର), କ୍ରୋଡ଼ ସଂଖ୍ୟା ବମ୍ବେ ଟାଇମ୍ସରେ Analyse this (ଏଇଟି ବିଶ୍ଳେଷଣ କରାଯାଉ) ଶୀର୍ଷକ ହରିଦ୍ ରଙ୍ଗ ଶୋଭିତ ବକ୍ସରେ ଛପା ହୋଇଥିବାର ଦେଖିଲି "Why can't we say chhee any more?" (ଆମେ ପୁଣି କାହିଁକି ଛି' ନ କହିବା ଯେ?) । ବମ୍ବେ ଟାଇମ୍ସ (B.T.) ୧୯୯୭ର ବହୁ ଚର୍ଚ୍ଚିତ, ବହୁଳ ପ୍ରଚାରିତ ଓ ପ୍ରଶଂସିତ ଛିଃ ଆନ୍ଦୋଳନ (Chhee campaign)ର ଉଲ୍ଲେଖ କରି, ପୁଣି ଏହାର ପୁନଃ ପ୍ରବର୍ତ୍ତନ କଥା ଉଠାଯାଇଥିଲା । ସେତେବେଳେ ବମ୍ବେକୁ ନିର୍ମଳ ରଖିବା ପାଇଁ ଗଠିତ Clean Mumbai Foundation ପକ୍ଷରୁ ବମ୍ବେ କର୍ପୋରେସନ୍ (BMC) ଏବଂ ହିନ୍ଦୁସ୍ଥାନ୍ ଥମ୍ପସନ୍ ଆଡ୍‌ଭର୍ଟାଜିଂ ଏଜେନ୍ସି ସହାୟତାରେ ଏହା ସଂଗଠିତ ହୋଇଥିଲା ।

ପେଟ ତଲବ ଦେଲେ (Call of nature) ଗାଁ ଗଣ୍ଡାରେ ଯାହାକୁ 'ପୋଖରୀ ପାଣି' ଯିବା, 'ବାହାର ପାଣି' ଯିବା କୁହନ୍ତି ତା'କୁ ଆଜି କାଲିର ଭାଷାରେ ଟଏଲେଟ୍ ଯିବା, ବାଥରୁମ୍ ଯିବା ଆଦି କୁହାଯାଉଛି । ତାହା ତ ଶରୀରର ପ୍ରାକୃତିକ ପ୍ରକ୍ରିୟା । ମଣିଷର ସ୍ୱାଭାବିକ ନିତ୍ୟକର୍ମ । ସଭ୍ୟତା ତା'କୁ ସଂଯତ, ଶୃଙ୍ଖଳିତ କରିଛି । ପଶୁ ପରି ମଣିଷ ଯେଉଁଠି ମନ ସେଠି ଝାଡ଼ା ପରିସ୍ରା ନ କରି ସେଥିପାଇଁ ଉଦ୍ଦିଷ୍ଟ ଥିବା ବା ତିଆରି ହୋଇଥିବା ନିର୍ଦ୍ଦିଷ୍ଟ ସ୍ଥାନକୁ ବ୍ୟବହାର କରେ ।

ଜନଗହଳି ସହରରେ ଯେକୌଣସି ସ୍ଥାନରେ ଝାଡ଼ା ବସିବା, ପରିସ୍ରା କରିବା ମନା । ସେପରି କଲେ ଅପରିଚ୍ଛନ୍ନତା ଓ ଦୁର୍ଗନ୍ଧରେ ପରିବେଶ ଦୂଷିତ ହୋଇ ନଗର ଜୀବନ କେତେ ଯନ୍ତ୍ରଣା ଦାୟକ ହୁଏ ତାହା ଅନୁଭବୀମାନେ କହିବେ । ଓଡ଼ିଶାର ସହରମାନଙ୍କରେ ତାହା ହେଉଛି । ଏକଦା ଜଣେ ପ୍ରଫେସର୍ ଭୁବନେଶ୍ୱରରେ ତାଙ୍କର ପ୍ରାତଃ ଭ୍ରମଣ କାଳରେ

ଏବଂବିଧ ଅନୁଭୂତି ବର୍ଣ୍ଣନା କରି ସମ୍ବାଦ ପତ୍ରକୁ ଲେଖାଟିଏ ପଠାଇଥିଲେ । ଛପା ହୋଇଥିଲା । ଏହା ଯେ କେବଳ ଭୁବନେଶ୍ୱର, କଟକ ପରି ସହରମାନଙ୍କରେ ହେଉଛି ତାହା ନୁହେଁ । ଏହା ଅଧିକାଂଶ ଭାରତୀୟ ସହରରେ ଦେଖାଯାଏ । ବମ୍ବେର ନାଗରିକମାନେ ଏକଦା ଏପରି ଅନୁଭବ କରି କରି ତା'ର ନିରାକରଣ ଉପାୟ ପାଞ୍ଚିଥିଲେ । ତା'କୁ କୁହାଯାଉଥିଲା ଛି' ବା ଛି' ଛି'କାର ଆନ୍ଦୋଳନ (Chhee campaign) । ତାହା କିପରି ହୋଇଥିଲା ?

ସାଧାରଣ ସ୍ଥାନରେ ରାସ୍ତା ଘାଟରେ ଛେପ, ଖଙ୍କାର ପକାଇବା, ପରିସ୍ରା କରିବା, ଝାଡ଼ା ଫେରିବା ଦେଖିଲେ 'ଛିଃ' କହି ଅସନ୍ତୋଷ, ଘୃଣା ବ୍ୟକ୍ତ କରିବାକୁ ଜନମତ ସଂଗଠିତ କରାଗଲା । ସେଥିପାଇଁ ଦଳ ଦଳ ଲୋକ ବାହାରିଲେ । କୁହାଗଲା- "Say chhee and express your disgust each time you see some body spit, litter or urinate in open place ." ବିଶେଷ କରି ଯୁବକ ଓ ପିଲାମାନେ ଏଥିରେ ବିଶେଷ ଆଗ୍ରହ ପ୍ରକାଶ କଲେ । ଅଂଶ ଗ୍ରହଣ କଲେ । ବମ୍ବେ ମ୍ୟୁନିସ୍ପାଲ୍ କର୍ପୋରେସନ୍ (BMC)ରୁ ପ୍ରକାଶ୍ୟରେ ଏପରି ଘୃଣା ପ୍ରକାଶ କରିବାର ଅନୁମତି ପତ୍ର ମିଳିଥିଲା । ଥରେ ଜଣେ ଆକାଉଣ୍ଟାଣ୍ଟ୍ ଉଚ୍ଚ ସ୍ୱରରେ 'ଛିଃ' କହିବାରୁ ଝାଡ଼ା ବସିଥିବା ଲୋକ ଜଣକ ଉଠି ଆସି ପାଟିତୁଣ୍ଡ କରି ତାଙ୍କୁ ଗାଳିଗୁଲଜ କଲା । ଆକାଉଣ୍ଟାଣ୍ଟ ଓଲଟି ଅଧିକ ଉଚ୍ଚ ସ୍ୱରରେ ପାଟିକରି, ଏହା ତାଙ୍କର ନାଗରିକ ଅଧିକାର ଏବଂ ଏପରି ପ୍ରକାଶ୍ୟରେ ଉଚ୍ଚ ସ୍ୱରରେ 'ଛିଃ' କହିବାର ଅଧିକାର ତାଙ୍କୁ ମ୍ୟୁନିସିପାଲଟି ପକ୍ଷରୁ ମିଳିଛି ବୋଲି କହିଲେ । କଥାରେ କଥାରେ ତାଙ୍କୁ ଲଜ୍ଜିତ କଲେ, ସେହି ସମୟର ସ୍ମୃତିଚାରଣ କରି ଜଣେ ଛାତ୍ରୀ କହିଛନ୍ତି- ଆମେ ସେତେବେଳେ ସ୍କୁଲରେ ପଢୁଥିଲୁ । ଜଣେ ଲୋକ ରାସ୍ତା କଡ଼ରେ ପରିସ୍ରା କରୁଥିବାର ଦେଖି, ଆମେ ଦଳେ ଛାତ୍ରୀ ତାଙ୍କ ନିକଟରେ ବଡ଼ ପାଟିରେ କହିଲୁ 'ଛିଃ । ଏଇଥିରେ ସେ ଲଜ୍ଜିତ ହେଲେ । ଦଳବଦ୍ଧ ହୋଇ ଏପରି ଅସଭ୍ୟ କାର୍ଯ୍ୟର ପ୍ରତିକାର କରାଯାଇପାରେ ବୋଲି, ସେ ଅଭିଜ୍ଞତାରୁ କହିଥିଲେ ।

ରାସ୍ତା କଡ଼ରେ ସ୍ଥାନେ ସ୍ଥାନେ ଡଷ୍ଟବିନ୍, ଇଉରିନାଲ୍, ଶୌଚାଳୟର ବ୍ୟବସ୍ଥା ସୁଲଭ ନ କରି ଏପରି ଆନ୍ଦୋଳନ ଆରମ୍ଭ କରିବା ସମୀଚୀନ ନୁହେଁ ବୋଲି ମତ ପ୍ରକାଶ ପାଇବା ସ୍ୱାଭାବିକ । କିନ୍ତୁ ଏସବୁ ବ୍ୟବସ୍ଥା ଥାଇ, ତା'ର ସଦୁପଯୋଗ ନ କରି ରାସ୍ତା ଧାରେ ଧାରେ ବା ଯେକୌଣସି ସାଧାରଣ ସ୍ଥଳ ଅପରିଷ୍କାର କରିବାର ବଦ ଅଭ୍ୟାସକୁ ବନ୍ଦ କରାଇବା ଉଚିତ୍ ନୁହେଁ କ ?

ଓଡ଼ିଶାର ବହୁ ସହର, ଏପରିକି ରାଜଧାନୀ ଭୁବନେଶ୍ୱର ନଗରୀରେ ବହୁ ସ୍ଥାନ ବହୁ ଅଂଚଳରେ ବିଶେଷ କରି ସହର ତଳି ବସ୍ତି ଅଂଚଳର ପାଖାପାଖି ସ୍ଥାନରେ ପୁରୀଷ ସ୍ତୁପମାନ ଠାଆକୁ ଠାଆ ହୋଇ ଥାଇ ଦୁର୍ଗନ୍ଧ ବିସ୍ତାର କରୁଥିବା ଦୃଶ୍ୟ କ'ଣ ବିରଳ? ଏହାର ପ୍ରତିକାର ପାଇଁ ରାସ୍ତାର ଧାରରେ ସ୍ଥାନେ ସ୍ଥାନେ ପରିସ୍ରାଗାର, ଡଷ୍ଟବିନ୍, ଶୌଚାଳୟର ବ୍ୟବସ୍ଥା ସହିତ ଲୋକଙ୍କର ଅଭ୍ୟାସକୁ ବାଟରେ ପକାଇବା ପାଇଁ 'ଛିଃ' ଆନ୍ଦୋଳନ ପରି କିଛି ଉଦ୍ୟମ କରିବାର ଆବଶ୍ୟକତା କ'ଣ ନାହିଁ? ଅବଶ୍ୟ ଆଜିକାଲି ତ ଛି ଛିକାର କଳାଭଳି କେତେ କେତେ ଘଟଣା ଘଟିଲାଣି। ସେଥିକି ଚାହିଁ ଲୋକ ନିନ୍ଦାର ଅଭିବ୍ୟକ୍ତି ମାର୍ଗ ବି ବାହାରିବା ଲୋଡ଼ା।








## ଗାଈକି ମାଇଲେ ମଲି

କଥାରେ ଅଛି- 'ଗାଈ ମାଇଲେ ମଲି, ଗାଈକି ମାଇଲେ ମଲି ।' ଗାଈଟା ଯଦି ମାରଣା ହୋଇଥିବ ଓ ଗୋଡ଼େଇ ଗୋଡ଼େଇ ତା'ର ମୁନିଆ ମୁନିଆ ଶିଙ୍ଘରେ ଭୁସାଏ ଭୁସାଏ ମାରି ପକାଉଥିବ, ତେବେ ଅବସ୍ଥାଟା କ'ଣ ହେବ ଭାବନ୍ତୁ ତ । ସେହିଭଳି ଦଶାକୁ ମନେପକାଇ ମାରଣା ଗାଈଟା ଶିଙ୍ଘ ଦେଖାଇ ମୁଣ୍ଡ ହଲାଇ ମାରିବାକୁ ଗୋଡ଼ାଇ ଆସୁଥିବା ବେଳେ ଜଣେ ଆତଙ୍କିତ ହୋଇ ମରିଗଲିଲୋ, ମାରିପକାଇଲାଲୋ ବୋଲି ରଡ଼ି ଛାଡ଼ି ଦୌଡ଼ି ଦୌଡ଼ି ପଳାଇଯିବ ନା କୌଣସି ଗୋଟାଏ ମାରଣାସ୍ତ୍ର ଘେନି ତାକୁ ଯେସାକୁ ତେସା କରିଦେବ ? ଏ ଭଳି ପରିସ୍ଥିତିରେ ଧର୍ମକୁ ମାନୁଥିବା ଲୋକେ କ'ଣ କରନ୍ତିନା: ଏମିତି ପ୍ରକୃତିର ଗାଈକୁ କଳେବଳେ କୌଶଳେ କୌଣସି ପ୍ରକାରେ ଆୟତ୍ତ କରି ନିଅନ୍ତି । ଗାଈ ଅବଧ୍ୟ । ଗୋ ହତ୍ୟା ମହାପାପ । ସେଭଳି ପାତକରୁ ମୁକୁଳିବା ଲାଗି କେତେ୍ କେତେ୍ ଲୋକ, କେତେ୍ କେତେ୍ ଋଷି ଓ ଦେବତା କି କି ମାନ ନ କରିଛନ୍ତି ! ଗୁହାଳରେ ଥିବା ଗୋରୁ, ସେ ଗାଈ ହେଉ କି ବଳଦ ହେଉ, ଅଣହେଳାରେ କି କୌଣସି କାରଣରୁ ଯଦି ମରିଗଲା, ତେବେ ଗୃହସ୍ଥକୁ 'ପାତକ' ଲାଗେ । ସେ ଦାନ୍ତରେ କୁଟା ବେକରେ

ପାଳ ଦଉଡ଼ି ପକାଇ ଦୁଆର ଦୁଆର ବୁଲି ଭିକ ମାଗେ । ସେଥିରୁ ଯାହା ମିଳେ, ସେତକ ଓ ତହିଁରେ କିଛି ମିଶାଇ ପ୍ରାୟଶ୍ଚିତ କରେ ।

କୋଉ ପୁରାଣରେ ଅଛି କେଜାଣି, ମହାଦେବ କୁଆଡ଼େ ତାଙ୍କ ପାତ୍ରୀ ଓ କୁଶବିଡ଼ାଟି ନଈ କୂଳରେ ଥୋଇ ଗାଧୋଇ ଯାଇଥିଲେ । ସିଆଡୁ ଫେରିଲା ବେଳକୁ କପିଳା ଗାଈ ସେ କୁଶବିଡ଼ାକୁ ତା ଥୋମଣିରେ ପୂରାଇ ପାକୁଳଉଛି । ଖାଲି କ'ଣ ସେତିକି, ମହାଦେବ ତ ମହାରାଗୀ ଦେବତା, ସେ ଆସି ଯେତେବେଳେ ଦେଖିଲେ ଏମନ୍ତ କାଣ୍ଡ, ଦାନ୍ତ କଡ଼ ମଡ଼ କରି ଆଖିତରାଟି ତା'ଆଡ଼କୁ ଅନାଇଲେ, ସେ ଗୋଟିଏ ମୁଣ୍ଡର ତିନିଟା ଆଖିକୁ ତରାଟି ଥିଲେ କି ପଞ୍ଚମୁଖ ହୋଇ ପନ୍ଦରଟି ଆଖିକି ତରାଟି ଥିଲେ ସେ ଦୃଶ୍ୟ କିଏ ବା ଦେଖିଛି ? କୋଉଠି ପଢ଼ିଲା ପରି ଲାଗୁନି । ତେବେ ଗାଈଟି କୁଆଡ଼େ କୁଶ ବିଡ଼ାକ ପାକୁଳାଉ ପାକୁଳାଉ କିଛି ନଜାଣିଲା ପରି ତା'ର ଦୁଇଟି ନିରୀହଆଖିରେ ତାଙ୍କୁ ଅନେଇଲା । ମହାଦେବ କି ସମ୍ଭାଳି ହୁଅନ୍ତି, ସେ ତା' କର୍ଣ୍ଣମୂଳକୁ ମାଇଲେ ଏକ ବ୍ରହ୍ମ ଚାପୁଡ଼ା ଯେ ସେଥିରେ ଛିଡ଼ିଗଲା ତା' ମୁଣ୍ଡ । ତା' ମୁଣ୍ଡ ସିନା ଛିଡ଼ିଗଲା, ସେତିକିରେ କଥାଟା ଛିଡ଼ିଲାନି । ସେ ମୁଣ୍ଡଟି ଲାଗିରହିଲା ତାଙ୍କ ହାତରେ । ମହାଦେବଙ୍କ ଭଳି ଦେବତା ତୀର୍ଥକୁ ତୀର୍ଥ ବୁଲି କେତେ କେତେ ତୀର୍ଥରେ ସ୍ନାନ କରି ପ୍ରାୟଶ୍ଚିତ କଲେ । ତହୁଁ ତାଙ୍କ ହାତରୁ ମୁଣ୍ଡଟି ଯାଇ ଖସିଲା । ଅବଶ୍ୟ ସେଇ ମୁଣ୍ଡଟି ଛିନ୍ନମସ୍ତା ଗାଈଟି ଦେହରେ ଯୋଡ଼ି ହୋଇ, ସେ ଜୀବନ୍ୟାସ ପାଇ ପୁଣି ଚରାବୁଲା କଲା କି ନାହିଁ ସେ କଥା କହିପାରିବିନି । ପୁରାଣ ଓ ଅତିକଥାର କଳ୍ପନା ଓ ବର୍ଣ୍ଣନାରେ ସବୁ ସମ୍ଭବ । ପଢନ୍ତୁ କି ଶୁଣନ୍ତୁ ସେତିକିରେ ଖୁସି ହୁଅନ୍ତୁ । ସେ ବିଷୟରେ କିଛି ପଚାରିଲେ କି ସତ୍ୟାସତ୍ୟ ଅନୁସନ୍ଧାନ ବା ତଥ୍ୟଚର୍ଚ୍ଚାରେ ମାତିଲେ ମୁଣ୍ଡବିନ୍ଧିବ । ନହେଲେ ପାଟି ଘୋଳାଇ ହେବ । ଖାଲି ଶୁଣନ୍ତୁ, କଳ୍ପନାର ଲୀଳା । ଉପଭୋଗ କରନ୍ତୁ । କିନ୍ତୁ ଗାଈଟିକୁ ଭୁଲିବେନି । ତା' ମହିମାର ଗାଥା ସ୍ୱର୍ଗରୁ ପାତାଳ ଯାଏଁ ଲମ୍ବିଛି ।

ନଈ ତ ନଈ ଗୋଦାବରୀ । ଦିନେ ପଶ୍ଚିମଘାଟ ପର୍ବତମାଳାର ସହ୍ୟାଦ୍ରିଶିଖରରେ ମହାଦେବ ପହଞ୍ଚିଥିଲେ । କାହିଁକି ପହଞ୍ଚିଥିଲେ ? ଏଇଠୁ ଆରମ୍ଭ ହେବ ଗୋଦାବରୀ ନଈର ଜନ୍ମ ଉପାଖ୍ୟାନ । ପୂର୍ବକାଳରେ ସେଇଠି ଥିଲା ଗୌତମ ଋଷିଙ୍କ ଆଶ୍ରମ । ଋଷି ଓ ତାଙ୍କ ଶିଷ୍ୟମାନେ ଲାଗିପଡ଼ି ନାନା ପ୍ରକାରର ଗଛବୃକ୍ଷ ଲଗେଇଥିଲେ । ବିଲରୁ ବଗିଚା ଯାଏ ସେମାନଙ୍କ ପରିଶ୍ରମ ସବୁଠି ଫୁଟି ହସୁଥିଲା । ଦିନେ ଗୋଟେ ଗାଈ କ'ଣ କଲା ନା କୁଆଡ଼େ ଥେଲା ଥେଲା ଆସି ପଶିଗଲା ଋଷିଙ୍କ ଆଶ୍ରମରେ । ଯା'ଙ୍କ ବିଲବଗିଚାରୁ ଯାହା ତ ଖାଇଲା ଖାଇଲା, ଦଳି ଚକଟି ନାର୍‌ଖାର୍ କରିଦେଲା । ଆଉ କିଏ ହେଇଥିଲେ ସିନା ବାଡ଼ି କି ପାଞ୍ଚଣଟାଏ ଆଣି ଗାଈଟାକୁ ଘଉଡ଼େଇଥାନ୍ତା, କିନ୍ତୁ ସେ ତ ଋଷି ! ଆପଣା

ପାତ୍ରୀରୁ ଧଇଲେ ଗୋଟେ କୁଶ, ତାକୁ ମନ୍ତୁରି ଦେଇ ଫୋପାଡ଼ିଲେ ଗାଈ ଉପରକୁ । ଆ ହା-ହା-ହା, ସେଇଟି ଯେମିତି ଗାଈ ଦେହରେ ବାଜିଛି, ସେ ତତ୍‌କ୍ଷଣାତ୍ ପ୍ରାଣ ଛାଡ଼ି ସେଇଠି ଟଳି ପଡ଼ିଲା । କେଡ଼େବଡ଼ କାଣ୍ଡଟିଏ ଘଟିଗଲା । ଆଶ୍ରମରେ ଗୋହତ୍ୟା ! ଋଷି ସିନା ରାଗରେ ମନ୍ତୁରା କୁଶଟି ଫୋପାଡ଼ିଥିଲେ, ସେତେବେଳେ କ'ଣ ରାଗ ମୁହୂର୍ତ୍ତରେ ତା'ର ପରିଣତି କଳ୍ପନା କରିଥିଲେ ? ଗାଈଟି ଟଳିପଡ଼ିବାର ଦେଖି ସେ କାବାକାଠ ହୋଇ ଠିଆ ହୋଇଗଲେ । ତାଙ୍କଠାରେ ଗୋହତ୍ୟା ପାପ ଲାଗିଲା । ଆଶ୍ରମ ଅପବିତ୍ର ହୋଇଗଲା । କରିବେ କ'ଣ ? ଋଷିମାନଙ୍କର ବଳ ତ ତପସ୍ୟା, ସେଇଆ କଲେ । ମହାଦେବଙ୍କର ବୃଷଭ ବାହାନ । ଗୌତମ ଋଷି ତପସ୍ୟାରେ ବସି ତାଙ୍କରିଠାରେ ଧ୍ୟାନ ଲଗାଇଲେ । ମହାଦେବ ଆସି ଉଭାହେଲେ ଋଷିଙ୍କ ସମ୍ମୁଖରେ । ସବୁ ଶୁଣିଲେ ଦେଖିଲେ ରାଗ ତ ବ୍ରହ୍ମ ଚଣ୍ଡାଳ । ଋଷି ରାଗନହୋସରେ କରି ବସିଛନ୍ତି ଏମିତି ଗୋଟାଏ କାଣ୍ଡ । ଯାହା ହେଉ ତା'ର କିଛି ଉପାୟ ତ କରିବାକୁ ହେବ । ଭାବି ସ୍ଥିର କଲେ ଯଦି ଗଙ୍ଗା ଏଠି ଅବତରଣ କରନ୍ତି, ତେବେ ଆଶ୍ରମର ମଡ଼ା ହଟେଇବା, ଆଶ୍ରମକୁ ପାତକ ମୁକ୍ତ ତଥା ପବିତ୍ର କରିବା ଓ ଗୌତମ ଋଷିଙ୍କର ପାପମୋଚନ ଆଦି ଯାବତୀୟ ସମସ୍ୟା ସମାଧାନ ହୋଇଯିବ । ସେ ଡାକିଲେ ଗଙ୍ଗାଙ୍କୁ । କିନ୍ତୁ ଗଙ୍ଗା ତ ଭାରି ମନେଇ । ସେ ତାଙ୍କ ଶାନ୍ତ ସ୍ୱଭାବର ସ୍ୱାମୀ ଶାନ୍ତନୁଙ୍କୁ କୁଆଡ଼େ କହିଥିଲେ ଗଙ୍ଗା କହିଲେ ଥିବି ଗାଙ୍ଗି କହିଲେ ଯିବି । ମହାଦେବ ତାଙ୍କୁ କୋଉ ନାଆଁରେ କେମିତି ଡାକିଲେ କେଜାଣି, ସେ ଅବତରଣ କରି ପ୍ରବାହିତ ହେବାରେ ଅଣହେଳା କଲେ । ମହାଦବ ରାଗିଗଲେ । ଭାବିଲେ ମୋରି ଜଟାରେ ଆଶ୍ରୟ ନେଇଥିବା ଗଙ୍ଗା ପୁଣି ମତେ ଭାଣ୍ଡିଆ କରିବାକୁ ବସିଛି । ଏମିତି ଯୋର୍‌ରେ ସେ ତାଙ୍କ ମୁଣ୍ଡକୁ ଝାଙ୍କିଦେଲେ ଯେ ସେଥିରୁ ଜଟା ଫିଟି ଆକାଂଶ ଯାଏ ବ୍ୟାପିଗଲା । ସେ ହୋଇଗଲେ ବ୍ୟୋମକେଶ । ଗଙ୍ଗାଙ୍କ ଆଶ୍ରୟ ଉଜୁଡ଼ି ଗଲା । ସେ ଓହ୍ଲାଇ ପଡ଼ିଲେ । ଋଷିଙ୍କ ଅନୁରୋଧ, ମହାଦେବଙ୍କ ଆଦେଶ; କ'ଣ କରିବେ ? ମଲାଗାଈକୁ ଉଠେଇବାକୁ ପଡ଼ିବ । ସେ ତା' ଉପର ଦେଇ ପ୍ରବଳ ବେଗରେ ପ୍ରବାହିତ ହୋଇ ଗଲେ । ସେଇଠି ତାଙ୍କର ନାଁ ହେଲା ଗୋଦାବରୀ । ସେଥିପାଇଁ ଗୋଦାବରୀକୁ କୁହାଯାଏ ଦକ୍ଷିଣ ଭାରତର ଗଙ୍ଗା । ଗାଈ ଓ ନଈ ବିଷୟରେ ଅଛି ଏମିତି ଗୋଟିଏ ଉପାଖ୍ୟାନ ।

କର୍ଣ୍ଣଙ୍କ କଥା କିଏ ନ ଜାଣେ ? ସେ କୁନ୍ତୀଙ୍କ ଗର୍ଭରୁ ଜନ୍ମ ଘେନିଥିଲେ 'ସୂର୍ଯ୍ୟ ପୁତ୍ର' ଭାବରେ । କିନ୍ତୁ ଭାଗ୍ୟର ବିଡ଼ମ୍ବନା ଏମିତି ଯେ ସାରା ଜୀବନ ସେ 'ସୂତପୁତ୍ର'ର ପରିଚୟ ଘେନି କଟେଇଥିଲେ । କ୍ଷତ୍ରିୟ ଉଚିତ ବ୍ୟବହାର ଓ ସୁଯୋଗରୁ ବଞ୍ଚିତ ହେଲେ । ଦ୍ରୋଣ ତାଙ୍କୁ ଅସ୍ତ୍ରବିଦ୍ୟା ଶିଖାଇବାକୁ ମନା କରିଦେଲେ । ସେ ଗଲେ ପରଶୁରାମଙ୍କ ପାଖକୁ । ସେ ମଧ୍ୟ ବ୍ରାହ୍ମଣଙ୍କ ଛଡ଼ା ଆଉ କାହାକୁ ଅସ୍ତ୍ର ବିଦ୍ୟା ଶିଖାଉନଥିଲେ । କେବଳ ଗଙ୍ଗା ଦେବୀଙ୍କ କହିବା ଅନୁସାରେ ଭୀଷ୍ମଙ୍କୁ ଶିଖାଇ ଦେଇଥିଲେ । କର୍ଣ୍ଣ ତାଙ୍କରି ପାଖରେ

ପହଞ୍ଚିଲେ । କିନ୍ତୁ କୋଉ ପରିଚୟରେ ? ନିଜକୁ ବ୍ରାହ୍ମଣ ସନ୍ତାନର ପରିଚୟ ଦେଇ ରହିଲେ ପରଶୁରାମଙ୍କ ଆଶ୍ରମରେ । ନିଜର ନିଷ୍ଠା ଓ ସେବାଶୁଶ୍ରୂଷାରେ ପରଶୁରାମଙ୍କୁ ସନ୍ତୁଷ୍ଟ କଲେ । ତାଙ୍କଠାରୁ ବ୍ରହ୍ମଶର ପ୍ରଭୃତି ବହୁ ଦିବ୍ୟ ଅସ୍ତ୍ର ଲାଭ କଲେ । କିନ୍ତୁ ଦିନେ ଧରାପଡ଼ିଗଲେ ଗୋଟିଏ ଘଟଣାରେ । କପଟ ଉପାୟରେ ତାଙ୍କଠାରୁ ଅସ୍ତ୍ରବିଦ୍ୟା ଶିକ୍ଷାଲାଭ କରିଥିବାରୁ ପରଶୁରାମ ମହାକ୍ରୋଧରେ ତାଙ୍କୁ ଅଭିଶାପ ଦେଲେ । କହିଲେ ଆବଶ୍ୟକ ବେଳେ ଏହି ଅସ୍ତ୍ରମାନଙ୍କର ମନ୍ତ୍ର ତୁମର ସ୍ମରଣ ହେବ ନାହିଁ, କି ତା'ର ପ୍ରୟୋଗ କରି ପାରିବ ନାହିଁ । କଥାଟା ଏତିକିରେ ସରିନଥିଲା । କର୍ଣ୍ଣ, ପରଶୁରାମଙ୍କର ଯେଉଁ ଆଶ୍ରମରେ ଥିଲେ, ସେଇଟି ଥିଲା ମହେନ୍ଦ୍ର ଗିରିର ଗୋଟିଏ ଅଂଶରେ । ସୁନ୍ଦର ଜାଗା । ସେଇ ଅଞ୍ଚଳରେ ଥିଲା ଅସ୍ତ୍ର ଅଭ୍ୟାସ କରିବା ପାଇଁ ଭାରି ବଢିଆ ସ୍ଥାନ । କର୍ଣ୍ଣ ଦିନେ ସେଇଠି ଅସ୍ତ୍ର ଅଭ୍ୟାସ କରୁଥିଲେ । ଜଣେ ବ୍ରାହ୍ମଣଙ୍କ ଦୁଧିଆଳି ଗାଈଟିଏ ବି ସେଇ ପାଖରେ ଚରୁଥିଲା । କର୍ଣ୍ଣ କେମିତି ଦେଖିପାରିଲେନି କେଜାଣି, ଶରଟି ମାରୁ ମାରୁ ସେଇଟି ବାଜିଗଲା ସେହି ଗାଈ ଦେହରେ । ଗାଈ କି ଆଉ ବଞ୍ଚେ ! ସେଇଠି ଟଳି ପଡ଼ିଲା । ଆଗରୁ ତ ପାଇଥିଲେ ଗୁରୁଙ୍କ ଅଭିଶାପ । ଏବେ ଆସି ପହଞ୍ଚିଗଲେ ଆଉ ଜଣେ ବ୍ରାହ୍ମଣ । ଅଭିଶାପ ଦେଲେ । କହିଲେ- 'ଏଡ଼େ ବଡ଼ ଯୋଦ୍ଧା ତୁମେ, ଟିକିଏ ହେଲେ ବୁଦ୍ଧି ସୁଦ୍ଧି କି ହିତାହିତ ଜ୍ଞାନ ନାହିଁ । ମୋ ଆଶ୍ରମର ଗାଈଟାକୁ ଅକାରଣରେ ମାରିଦେଲ ? ଏ ପାପରୁ ନିସ୍ତାର ନାହିଁ । ତୁମେ ଯେତେବେଳେ ଜୀବନର ଶେଷ ଯୁଦ୍ଧରେ ପ୍ରାଣପଣେ ଲଢୁଥିବ, ସେତିକିବେଳେ ତୁମ ରଥର ଚକ ଗାତରେ ପଡ଼ି ତଳକୁ ତଳକୁ ଦବି ଦବି ଯିବ ।' ଏଥିରେ କର୍ଣ୍ଣ ସମ୍ପୂର୍ଣ୍ଣ ଭାଙ୍ଗି ପଡ଼ିଲେ । ଅସ୍ତ୍ରବିଦ୍ୟା ଏତେ କଷ୍ଟ କରି ଶିଖିଲେ ସିନା, କିନ୍ତୁ କଣ ହେବ ? ତା' ସହିତ ଦୁଇଟି ଅଭିଶାପର ବୋଝ ମୁଣ୍ଡେଇ ଫେରିବାକୁ ପଡ଼ିବ । କରିବେ କ'ଣ ? ବ୍ରାହ୍ମଣଙ୍କୁ ବହୁତ କୁହାପୋଛା କଲେ । ତଥାପି ବ୍ରାହ୍ମଣଙ୍କର କ୍ରୋଧ ଶାନ୍ତ ହେଲା ନାହିଁ । ଅଗ୍ନିହୋତ୍ରୀ ବ୍ରାହ୍ମଣ ସେ । ନିତି ଯଜ୍ଞ କରନ୍ତି । କ୍ଷୀର, ଘିଅର ଅଭାବ ମେଣ୍ଟିବ କେମିତି ? ସେ ଶୁଣିଲେ ନାହିଁ କି ଟଳିଲେ ନାହିଁ କର୍ଣ୍ଣଙ୍କ ଅନୁରୋଧରେ । ଏମିତି ଅଜ୍ଞାତସାରରେ ହେଉ ପଛକେ ଗାଈଟିଏ ମାରି ଦେଇଥିବାରୁ କର୍ଣ୍ଣ ଯେଉଁ ଅଭିଶାପ ପାଇଥିଲେ, ତା' ଫଳରେ କୁରୁକ୍ଷେତ୍ର ସଂଗ୍ରାମରେ ଅର୍ଜୁନଙ୍କ ସହିତ ଲଢ଼ିଲା ବେଳେ ତାଙ୍କ ରଥ ଚକ ଦବି ଯାଇଥିଲା । ଦବି ଦବି ଗଲା ତଳକୁ ତଳକୁ । ସେହି ସୁଯୋଗରେ କର୍ଣ୍ଣଙ୍କ ପରି ମହାବୀର ମହାରଥୀ ଅର୍ଜୁନଙ୍କ ଶରାଘାତରେ ନିହତ ହୋଇଥିଲେ । ଲକ୍ଷ୍ୟ କରନ୍ତୁ 'ଗାଈକି ମାଇଲେ ମଲି' କଥାଟିର ଇତିହାସ କେଡ଼େ ଲମ୍ବା । ପୁଣି କେତେ ଭୟାନକ ତାହାର ପରିଣତି ! ଗାଈଟିଏ ମାରିଥିବା ଯୋଦ୍ଧାର ରଥଚକ୍ରକୁ ଭୂମି ଗ୍ରାସ କରିବ ବୋଲି କାହିଁକି ଅଭିଶାପ ମିଳିଲା ? ଗାଈ ସହିତ ଭୂମି ବା ଧରିତ୍ରୀର ସଂପର୍କର କ'ଣ ?

ଆଉ ଗୋଟିଏ କଥା । ଦିନେ ପରୀକ୍ଷିତ ମହାରାଜା ନଈ କୂଳରେ ବୁଲୁବୁଲୁ ଦେଖିଲେ ଗୋଟିଏ ଦୃଶ୍ୟ । ସେତେବେଳକୁ ଦ୍ୱାପର ଯୁଗ ସରିବାକୁ ବସିଲାଣି । ସେ ଦେଖିଲେ

କ'ଣ କି- ଗୋଟିଏ ଷଣ୍ଢ ଓ ଗାଈଙ୍କର ଦୁର୍ଦ୍ଦଶା । ଷଣ୍ଢଟି ଗୋଟିଏ ପାଦରେ ଛିଡ଼ା ହୋଇଛି, ତା' ପାଖରେ ଗାଈଟିଏ ଭୟାର୍ତ୍ତ ହୋଇ ସେଇଠି ଥାଇ ତା' ଆଡ଼କୁ ଚାହିଁ ରହି କାନ୍ଦୁଛି । କାହିଁକି କାନ୍ଦୁଛି ? କାନ୍ଦୁଛି ଷଣ୍ଢ ଉପରେ ଗୋଟିଏ ରୁକ୍ଷ ଓ ନିର୍ଦ୍ଦୟ ଲୋକର ଅତ୍ୟାଚାର ଦେଖି । ସେ ଲୋକଟା ପୁଣି ରାଜା ପୋଷାକରେ ଅଛି ଓ ଲୁହାବାଡ଼ିଟାଏ ଧରି ଷଣ୍ଢକୁ ପିଟି ପକାଉଛି । ପରୀକ୍ଷିତ ଏ କାଣ୍ଡ ଦେଖି କାବା । ଭାବିଲେ ମୁଁ ତ' ରାଜା ଏଇଟା ପୁଣି କିଏ ? ରାଜାବେଶରେ ଉଭା ହୋଇ, ବୃଷଭ ଯିଏକି ଧର୍ମର ପ୍ରତୀକ ତାକୁ ଲୁହାଛଡ଼ଟାରେ ଏମିତି ନିର୍ଦ୍ଦୟ ଭାବରେ ପିଟିଦେଇଯାଉଛି ! ସେ ତାଙ୍କର ଖଣ୍ଡାକୁ କୋଷମୁକ୍ତ କରି ମହାକ୍ରୋଧରେ ଆଗେଇ ଆସିଲେ । ସେହି ମହାଅସ୍ତ୍ରକୁ ଉତ୍ତୋଳନ କରି ପଚାରିଲେ- ତୁ କିଏ ? ଛଦ୍ମ ରାଜାସାଜି ଏଠି କାହିଁକି ଏପରି ନିର୍ଦ୍ଦୟ ନୃଶଂସ ଆଚରଣ ଦେଖାଉଛୁ ? ତତେ ମୃତ୍ୟୁ ଦଣ୍ଡ ଅବଶ୍ୟ ମିଳିବ । କହ ତୁ କିଏ ? ସଫା ସଫା ଉତ୍ତର ଦେ । ଲୋକଟି ଯୋଡ଼ହସ୍ତ ହୋଇ କହିଲା- ମହାଭାଗ ମୁଁ କଳି । ମତେ ରକ୍ଷା କରନ୍ତୁ । ପରୀକ୍ଷିତ ବୃଷଭଙ୍କୁ ଅନାଇ ପ୍ରଣାମ କଲେ ଓ ପଚାରିଲେ- ଆପଣଙ୍କର ଏ ଦୁର୍ଦ୍ଦଶା କାହିଁକି ? ଆପଣ କିଏ ? ବୃଷଭ ଯାହା କହିଲେ ଏବଂ ତାଙ୍କୁ ଲୌହଦଣ୍ଡରେ ଯିଏ ପ୍ରହାର କରୁଥିଲା, ସେ ଯାହା କହିଲେ, ସେଥିରୁ ପରୀକ୍ଷିତ ବୁଝିଗଲେ ଯେ ବୃଷଭ ହେଉଛନ୍ତି ନିଜେ ଧର୍ମ ଏବଂ ସତ୍ୟ, ତ୍ରେତା ଯାଇ ସେ, ଦ୍ୱାପର ଯୁଗରେ ପହଞ୍ଚିଛନ୍ତି । ଏଥି ମଧ୍ୟରେ ସେ, ତାଙ୍କର ତିନୋଟି ପାଦ ହରାଇଛନ୍ତି ଓ ଗୋଟିଏ ମାତ୍ର ପାଦରେ ଛିଡ଼ା ହୋଇଛନ୍ତି । ଅର୍ଥାତ୍ ଧର୍ମ ଦୁର୍ବଳ ହୋଇ ଆସିଲେଣି । ଦୃଢ ଭାବରେ ଚାରୋଟି ଯାକ ଗୋଡ଼ରେ ପୂର୍ଣ୍ଣ ପ୍ରଭା ଓ ପ୍ରଭାବ ଘେନି ଛିଡ଼ା ହୋଇ, ପ୍ରଭାବ ବିସ୍ତାର କରିବାର ଶକ୍ତି କ୍ରମେ ହ୍ରାସ ପାଇ ଆସିଲାଣି । ତାଙ୍କ ପ୍ରଭା ଓ ପ୍ରଭାବ ଅଭାବରେ ଧରିତ୍ରୀ ନିଷ୍ପ୍ରଭ, ନିରକ୍ଷ । ଏପରି ଅବସ୍ଥାରେ ଜଣେ ରାଜା ବା ଶାସକ, ଯେ କି ଧର୍ମ ଓ ନ୍ୟାୟର ରକ୍ଷକ ଭାବରେ ରାଜଧଣ୍ଡ ଧରିଥାଏ ସେ ତ ଆତଙ୍କିତ ହେବାର କଥା । ପୁଣି ଯେତେବେଳେ ଜାଣିଲେ ବୃଷଭ ବା ଧର୍ମଙ୍କ ଉପରେ ଅତ୍ୟାଚାର ଦେଖି ତ୍ରସ୍ତ ଓ ଅସହାୟ ଭାବରେ ଛିଡ଼ା ହୋଇଥିବା ଗାଭୀ ସ୍ୱୟଂ ଧରିତ୍ରୀ (ଗାଈ ଧରିତ୍ରୀର ପ୍ରତୀକ), ସେତେବେଳେ ସେ ଆହୁରି ଆତଙ୍କିତ ଓ ସତର୍କ ହୋଇ ଏହାର କାରଣ ଯିଏ, ତାକୁ ନିହତ କରିବାକୁ ଉଦ୍ୟତ ହେଲେ । ସେ କିଏ ଯେ, ଯାହା ଉପରେ ରାଜା ପରୀକ୍ଷିତ ଏପରି କ୍ଷୁବ୍ଧ ହେଲେ ଓ ହତ୍ୟା କରିବାକୁ ଉଦ୍ୟତ ହେଲେ ? ସେ ତ ନିଜର ପରିଚୟ ଦେଇଛନ୍ତି । ସେ ହେଉଛନ୍ତି ସ୍ୱୟଂ କଳିଯୁଗ !

ଗାଈ ଯଦି ପୃଥିବୀ ହୁଏ, ବା ପୃଥିବୀର ପ୍ରତୀକ ହୁଏ, ଏବେ ବିଚାର କରନ୍ତୁ; ଟିକିଏ ଗଭୀର ଭାବରେ ଚିନ୍ତା କରନ୍ତୁ, ସିଏ ମାରିବ । ତା'କୁ ମାରିବା କଥାଟା କ'ଣ ? ଏବେ ସୁନାମି ହେଉଛି । ଭୂମିକମ୍ପ ହେଉଛି । ଭୂମିରୁ ଉତ୍ପନ୍ନ କମିଯାଉଛି। ଅର୍ଥାତ୍ ଭୂମି ଖାଦ୍ୟ ଦେବାକୁ କୁଣ୍ଠିତ ହେଉଛି । ମରୁଡ଼ି ପଡୁଛି, ବରଫ ପାହାଡ଼ ତରଳୁଛି, ସମୁଦ୍ର ମାଡ଼ି ଆସୁଛି,

ଏସବୁ କ'ଣ ? ଆମର ପ୍ରାତଃ ସ୍ମରଣ ମନ୍ତ୍ରରେ ଗୋଟିଏ ପଦ ଅଛି, ଯେଉଁଥିରେ ଧରିତ୍ରୀଙ୍କୁ ସମ୍ବୋଧନ କରି କୁହାଯାଉଛି- 'ସମୁଦ୍ର ବସନେ ଦେବୀ, ପର୍ବତ ସ୍ତନ ମଣ୍ଡଳେ' । ଆଜି ଯେତେବେଳେ ସେହି ପର୍ବତ ଏବଂ ସମୁଦ୍ର ଆଡ଼କୁ ବିପଦ ମାଡ଼ି ଆସୁଛି, ଧରିତ୍ରୀ ସାଗର କୋଳରେ ଆଶ୍ରୟ ନେଇଥିବା ପ୍ରାଣୀମାନଙ୍କ ପ୍ରତି ତାହା କ'ଣ ? ଗାଈ ମାରିବା ଭଳି କଥା ନୁହେଁ କି ? ପୁଣି ଏହା ହେଉଛି କାହିଁକି ? ଧରିତ୍ରୀ ଉପରେ ମନୁଷ୍ୟର ଅତ୍ୟାଚାର କ'ଣ କମ୍ ? ତା'ର ବିଭିନ୍ନ ଅଂଶରେ ଆଶ୍ରୟ ନେଇଥିବା ମଣିଷମାନେ ସେହି ସେହି ଅଞ୍ଚଳ ବା ଧରିତ୍ରୀର ଅଂଶକୁ ନିଜ ନିଜର ବୋଲି ଦାବି କରି ପରସ୍ପର ସହିତ ଲଢିବା ଓ ସେତିକିରେ କ୍ଷାନ୍ତ ନ ରହି ଉପରକୁ ଉଠି ବୋମା ବର୍ଷଣ କରିବା, ଧରିତ୍ରୀର ଗୋଟିଏ ଗୋଟିଏ ଅଂଶକୁ ଏଥିରେ ଛାରଖାର କରିଦେବା; ପୃଥିବୀ ବା ଧରିତ୍ରୀ ମାତା ପ୍ରତି ଅତ୍ୟାଚାର ନୁହେଁ ? ଉପରେ ଉଲ୍ଲେଖ କରାଯାଉଥିବା ଉପାଖ୍ୟାନରେ ପରୀକ୍ଷିତ ଯାହାକୁ ମାରିବାକୁ ଉଦ୍ୟତ ହୋଇଛନ୍ତି, ସେ ଛଦ୍ମବେଶୀ ରାଜା ଅର୍ଥାତ୍ ଶାସନ ପାଇଁ ଅଯୋଗ୍ୟ ଶାସକ , ଅଥଚ ସେଥିପାଇଁ ଆଗଭର ! ସେ ପୁଣି ଗୋଟେ ଯୁଗ ବା କାଳ, ଯେଉଁ କାଳ ବା ସମୟରେ ଆମେ ଚଳୁଛେ, କଳିଯୁଗ । ସଂଶିତ କାଳରେ ପରୀକ୍ଷିତଙ୍କ ଭୂମିକା ନେବ କିଏ ?

'ଗାଈକି ମାଇଲେ ମଲି ଗାଈ ମାଇଲେ ମଲି' କଥାଟି କେତେ ଗମ୍ଭୀର କେତେ ଭୟଙ୍କର । ଗାଈପରି ଉପକାରୀ ଜୀବ, ପୁଣି ଉପକାରି ଉଦ୍ଭିଦ ଜଗତ, ପାହାଡ଼, ପର୍ବତ, ଭୂଗର୍ଭ, ନଦୀ ଓ ସମୁଦ୍ର ଜଳ, ଏଥିପ୍ରତି ମନୁଷ୍ୟ ସୁବିଚାର କରୁଛି କି ? କିଏ ଭୋଗିବ ଏହାର ପରିଣତି ? ଗାଈକି ମାରିବନି କି ଗାଈ ମରିବନି: ଏହା କ'ଣ ସମ୍ଭବ ନୁହେଁ ?







## ମନ କହୁଚି ଘୋଡା ଚଢିବି

ମନ କହୁଚି ଘୋଡା ଚଢିବି ।
କର୍ମ କହୁଚି ଘାସ କାଟ ॥

ଏଠାରେ 'କର୍ମ' ବୋଇଲେ ପୂର୍ବ ଜନ୍ମର କର୍ମ, ଯାହା ଇହ ଜନ୍ମକୁ 'ଭାଗ୍ୟ' ନାମ ଘେନି ଆସିଛି । ତାହା ପୁଣି କପାଳରେ ଲେଖା ହୋଇଯାଇଛି ବୋଲି ବିଶ୍ୱାସ । କୁହାଯାଉଛି – 'କପାଳ ଲିଖନ, କେ କରିବ ଆନ ।' ଅର୍ଥାତ୍, ଏଇ 'କର୍ମ' ବା କପାଳଲିଖନକୁ ଟାଳି ହେବ ନାହିଁ । କିନ୍ତୁ ମନ ଉପରେ ଏମିତି – 'କପାଳ ଲିଖନ'ର ପାହାଡ ମଡାଇ ଦେବା କ'ଣ ଠିକ୍ ହେଉଛି ? ମନ ଯଦି ଲୋଡୁଛି ଘୋଡା ଚଢିବ, ଅର୍ଥାତ୍ ଶ୍ରୀସମ୍ପଦ ଭୋଗ କରିବ; କରୁ । ତେବେ, ସେଥିପାଇଁ ବିବେକ ଦେଖାଇଥିବା ମାର୍ଗରେ ଗତି କରିବା ଭଲ । କାରଣ ବିବେକ ସହିତ ସଦ୍‌ବୁଦ୍ଧି ଥାଏ । ସାଧନାରେ ନିଷ୍ଠା ଓ ନିରନ୍ତରତା ରହିଲେ, ବିବେକ ଓ ସଦ୍‌ବୁଦ୍ଧି ଅଭୀଷ୍ଟ ପାଖରେ ପହଞ୍ଚାଇ ଦେବେ । ଲକ୍ଷ୍ୟ ଅପହଞ୍ଚ ରହିବ ନାହିଁ । ଏହା ଲକ୍ଷ୍ମୀବନ୍ତ ପୁରୁଷମାନଙ୍କର ଅଙ୍ଗେ ଲିଭାଇବା ଅନୁଭବ । ତଥାପି ଭାଗ୍ୟ ଉପରେ ମଣିଷର ଭାରି ବିଶ୍ୱାସ । ସେଇ ଭାଗ୍ୟକୁ ଆପଣା ଆଡକୁ ଟାଣି ନେବା କି ଝିଙ୍କି ଆଣିବା ଲାଗି ଉପାୟ ଓ ଚେଷ୍ଟାର ଅନ୍ତ ନାହିଁ ।

ପାଞ୍ଚ ପୁଅଙ୍କୁ ଘେନି ବଣରେ ରହିବା ବେଳେ, କୁନ୍ତୀ ଭାବୁଥିଲେ – 'ମା ଜନମ କରିବ ତ କପାଳିଆ ପିଲା ଜନମ କରିବ । ବୀର, ପଣ୍ଡିତପଣରୁ କି ମିଳିବ । ମୋ ପିଲାଏ ବିଦ୍ୟା,

ବୀରତ୍ୱ କାହିଁରେ ଊଣା ? ହେଲେ ଦେଖ ଯେ, ବଣରେ ପଡିଛନ୍ତି ।' ଏଇ କଥାଟି ବ୍ୟାସଙ୍କ ପୋଥିରେ ଅଛି-

ଭାଗ୍ୟବାନ ପ୍ରସୂୟେଥା ମା ଶୂର ମାଚ ପଣ୍ଡିତ
ଶୂରୋଽପି କୃତବିଦ୍ୟୋଽପି ବନେ ସିଦନ୍ତି ମେ ସୂତାଃ ।

ହେଲା, ଏବେ । କିନ୍ତୁ ସେଇ ପିଲାଏ ବିବେକ ବୁଦ୍ଧି ଖଟାଇ, ନିରନ୍ତର ଉଦ୍ୟମରେ ଲାଗିରହି, ଭାଗ୍ୟକୁ ଜିଣିଲେ କି ନାଇଁ ? ସେମାନଙ୍କର ପ୍ରାପ୍ୟ, ଯାନାସନ ତ ପାଇଲେ ! ହଁ, କଷ୍ଟଗୁଡିଏ ଭୋଗିଲେ । କିନ୍ତୁ ସେଇ କଷ୍ଟତକ ପାଲଟିଗଲା ସେମାନଙ୍କର ଇହ ଜନ୍ମର ଅକ୍ଷୟ କୀର୍ତ୍ତି । ରାମ ଓ କୃଷ୍ଣଙ୍କ କ୍ଷେତ୍ରରେ କ'ଣ ସେଇଆ ହୋଇନି ? ସେମାନେ ତ ବିଷ୍ଣୁଙ୍କ ଅବତାର । ହେଲେ, କି କଷ୍ଟ ନ ଭୋଗିଛନ୍ତି !

ମଣିଷ ନିଷ୍ଠା ଲଗାଇ ବିବେକାନୁମୋଦିତ ମାର୍ଗରେ ଉଦ୍ୟମ କରି ଯେଉଁ ସୁଖ ସମ୍ପଦ ପାଏ, ସେତକ ତାକୁ ଧାର୍ଯ୍ୟ ହୁଏ । ସେ ଏଥିପାଇଁ ଯେଉଁ କଷ୍ଟ କରିଥାଏ, ସେତକ ହୋଇଯାଏ ତାର ଗୌରବ । ତା'ରି ଦୃଷ୍ଟାନ୍ତ କିମ୍ବଦନ୍ତୀ ପରି ଚଳେ । 'ଲକ୍ଷ୍ମୀ ଏଇଥି ପାଇଁ ତା'ଠାରେ ବରଦାୟକ ହୋଇଛନ୍ତି' ବୋଲି କୁହାଯାଏ । ସେ ମାନସିକ ଅଶାନ୍ତି କି ଅପନିନ୍ଦା ଭୋଗେ ନାହିଁ । ମର୍ଯ୍ୟାଦାର ସହିତ ଜୀବନ ଯାତ୍ରା ଚଳାଇବାକୁ ରଥ ତା'ପାଇଁ ଥୁଆ ହୋଇଥାଏ । ସେ ରଥ ପୁଣି ସିଆଡୁ ସଜ ହୋଇଆସିଥାଏ । ଯେଉଁମାନେ ଅମାର୍ଗରେ ଯାଇ ଧନ କମାନ୍ତି ? ଅଧର୍ମ ବିତ୍ତ ବଢେ ବହୁତ । ଅବଶ୍ୟ, କିନ୍ତୁ, ଗଲାବେଳେ ଯାଏ ମୂଳ ସହିତ । ଖାଲି କଣ ସେତିକି ? ସେମାନଙ୍କ ପଛରେ ନିନ୍ଦା, ଦୁଶ୍ଚିନ୍ତା ଗୋଡାଏ । ରାଜଦଣ୍ଡ - ଆପେ ଉଣ୍ଢେଇ ହୋଇଯାଏ ।

ମନ କହୁଚି ଘୋଡା ଚଢିବ ତ' ଚଢୁ । ଉଦ୍ୟମେ କାର୍ଯ୍ୟ ସିଦ୍ଧି । ସେଥିକି ବାଟ ଅଛି । ସତ୍ ଚିନ୍ତା, ସଦ୍ ବୁଦ୍ଧି ସେ ବାଟରେ ବାଟେଇ ନେବ । ସେଥିପାଇଁ ଭାଗ୍ୟର ବରାଦ୍‌କୁ ହାତ ପତେଇବା ଲୋଡା ନାହିଁ । କିନ୍ତୁ -

ଉଦ୍ୟମେନ ହି ସିଦ୍ଧନ୍ତି କାର୍ଯ୍ୟାଣି ନ ମନୋରଥୈଃ
ନହି ସୁପ୍ତସ୍ୟ ସିଂହସ୍ୟ ପ୍ରବିଶନ୍ତି ମୁଖେ ମୃଗାଃ ।

ଭୋକିଲା ସିଂହ ଶୋଇରହି ଆହାରକୁ ତକେଇଥିଲେ ମିରିଗଟିଏମାନ ଆସି ତା' ପାଟିରେ ପଶିଯିବେ ନାହିଁ । ଖାଲି ମନ ଉଛନ୍ନ କଲେ କି ମିଳିବ, ମନ କାମନାକୁ ପୂରଣ କରିବା ଲାଗି ଉଦ୍ୟମ କରିବାକୁ ପଡିବ ହିଁ ପଡିବ । ପଞ୍ଚତନ୍ତ୍ରରେ ଅଛି -

ଉଦ୍ୟୋଗିନ ପୁରୁଷ ସିଂହ ମୁପୈତି ଲକ୍ଷ୍ମୀଃ
ଦୈବେନ ଦେୟମିତି କାପୁରୁଷା ବଦନ୍ତି ।
ଦୈବଂ ନିହତ୍ୟ କୁରୁ ପୌରୁଷମାତ୍ମଶକ୍ତ୍ୟା
ଯତ୍ନେନ କୃତେ ଯଦି ନ ସିଦ୍ଧତି କୋଽତ୍ର ଦୋଷଃ ॥

'ଦଇବ ଦଉଡି ମଣିଷ ଗାଈ' - କଥାଟି କାପୁରୁଷମାନଙ୍କ ତୁଣ୍ଡରେ ଶୋଭାପାଏ । ଉଦ୍ୟୋଗୀ ଲୋକେ ହିଁ ପୁରୁଷ ସିଂହ । ଲକ୍ଷ୍ମୀ ସେଇମାନଙ୍କଠାରେ ବରଦାୟକ ହୁଅନ୍ତି । ଆପଣା ତାକତ୍‌ରେ ଭାଗ୍ୟକୁ ଜିଣିବା ହେଲା ପୁରୁଷପଣିଆ । ଯଦି ଯାବତୀୟ ଯତ୍ନର ସହିତ ମନ ଜ୍ଞାନ କର୍ତ୍ତବ୍ୟ ଖଟାଇ ଉଦ୍ୟମ ସତ୍ତ୍ୱେ କାର୍ଯ୍ୟଟି ସିଦ୍ଧ ନହେଲା, ତେବେ ସେଥିରେ ଦୋଷ ନାହିଁ । ଉଦ୍ୟମ ନକରି କର୍ମ ଆଦରି ବସି ରହିବାଟା ହିଁ ଦୋଷ । କାପୁରୁଷତା । କିନ୍ତୁ ଉଦ୍ୟୋଗ ଉଚିତ ମାର୍ଗରେ କରାଯିବା ଦରକାର ।

ଆମ ପରମ୍ପରାରେ, ବଞ୍ଚିଥିବା ଲୋକଟିର ନାଁ ଆଗରେ ବା ନାଁ ସହିତ ଲେଖା ହୁଏ - ଶ୍ରୀ, ଶ୍ରୀଯୁକ୍ତ ବା ଶ୍ରୀମତୀ । ମରିଗଲେ ୰ ସ୍ୱର୍ଗତ ବା ସ୍ୱର୍ଗତା । ତେବେ ଦେହ ଘେନି ବଞ୍ଚିଥିବା ଯାକେ 'ଶ୍ରୀ' ସମ୍ପନ୍ନ ହୋଇ ରହିବା ଓ ଦେହଛାଡିଲେ ବା ମରିଗଲେ ସ୍ୱର୍ଗକୁ ଯିବାର ବାଟ କେଉଁଟା ?

ହତୋ ବା ପ୍ରାପସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷ୍ୟସେ ମହୀମ୍' । ଜୀବନ-ସଂଗ୍ରାମ ହେଲା - ଧର୍ମଯୁଦ୍ଧ । ସେଥିରେ ବୀରପରି ଶେଷ ପର୍ଯ୍ୟନ୍ତ ଲଢି ଲଢି ମୃତ୍ୟୁବରଣ କଲେ ସ୍ୱର୍ଗପ୍ରାପ୍ତି ହେବ । ଜିଣି ପାରିଲେ ରାଜ୍ୟ ଭୋଗ । ଜୀବନରୁ ପଳାୟନ ନୁହେଁ, ଜୀବନ ଯୁଦ୍ଧରେ ସଂପୃକ୍ତି ହିଁ କର୍ତ୍ତବ୍ୟ । କର୍ତ୍ତବ୍ୟ କର୍ମ କରିବାରେ ଯଶ ଅଛି । କର୍ମରେ ଆମର ଅଧିକାର । ଲାଭକ୍ଷତି, ଜୟପରାଜୟ ଆଡକୁ ଅନାଇଲେ ମନ ବିଚଳିତ ହେବ । ଯାହା ସହିତ ଧର୍ମ ଅଛି, ତାହା ସହିତ ବାସୁଦେବ ଅଛନ୍ତି । ତେଣୁ ବିଜୟ ତ ହେବ ହିଁ ହେବ । କେବଳ ଅବିଚଳିତ କର୍ତ୍ତବ୍ୟବୋଧ ଓ କର୍ମପ୍ରବୃତ୍ତି ଘେନି ଜୀବନସଂଗ୍ରାମରେ ବୀରୋଚିତ ଉତ୍ସାହରେ ଅବତୀର୍ଣ୍ଣ ହେବାର କଥା । ତେବେ, ମଣିଷର ମନ ତ !

ମନଟି ବେଳେ ବେଳେ ମଣିଷକୁ ଅବାଟରେ ନେବ । କଠୋପନିଷଦ୍‌ରେ କୁହାଯାଇଛି - 'ଶରୀରଟି ରଥ । ଆତ୍ମା ସେଇ ରଥର ରଥି । ତା'ର ସାରଥି ହେଉଛି - ବୁଦ୍ଧି, ଏବଂ ମନ ତା ହାତର ପଘା ବା ଲଗାମ ।' ତେଣୁ ଆତ୍ମାର ସାରଥି ସାଜିଥିବା ବୁଦ୍ଧି ହାତରେ ମନକୁ ଧରାଇ ଦେଲେ, ସେ ରଥଟିକୁ ଅବାଟରେ ଟାଣି ହୋଇ ଯିବାକୁ ଦେବ ନାହିଁ । 'ଜ୍ଞାନ' କଥାଗୁଡିକ 'ମନ-ଚଇତନ ସମ୍ବାଦ' ବା କଥୋପକଥନ ଭାବରେ ଅନେକ ସ୍ଥଳରେ ବ୍ୟକ୍ତ କରାଯାଇଛି । ଏଇ ଚୈତନ୍ୟ ବା ଚେତନା ମନକୁ ଚେତାଇ ଦିଏ । ହୁସିଆର୍ କରାଇଦିଏ । ବାଟେ ବାଟେ ନିଏ ।

ଜାଣିବା ଶୁଣିବା ଲୋକେ କହନ୍ତି - ମନ ଇନ୍ଦ୍ରିୟମାନଙ୍କ ଭିତରେ ଶ୍ରେଷ୍ଠ । ବୁଦ୍ଧଦେବ କହୁଥିଲେ - ଚିତ୍ତ-ଚୈତସିକ ଯେତେ ଧର୍ମ ଅଛନ୍ତି, ତା'ର ମୂଳରେ ଅଛି ମନ, ସେମାନଙ୍କର ମନ ହେଉଛି ପ୍ରଧାନ, ସେମାନେ ମନୋମୟ । ତେଣୁ ପ୍ରଦୂଷିତ ମନରେ ଯଦି କେହି କିଛି କହେ ଅବା କରେ, ତେବେ ଶଗଡ ଟାଣୁଥିବା ବଳଦର ଗୋଡକୁ ଚକ ଅନୁସରଣ କଲାପରି ଦୁଃଖ ଏହାର ପଛେ ପଛେ ଗତି କରୁଥାଏ । ଧମ୍ମପଦରେ ଏଇ କଥାଟି ପାଲିଭାଷାରେ ଲେଖାଯାଇଛି-

ମନୋପୂବ୍‌ବଙ୍ଗମା ଧମ୍ମା ମନୋସେଟ୍‌ଠା ମନୋମୟା ।
ମନସା ଚେ ପଦୁଟ୍‌ଠେନ ଭାସତି ବା କରୋତି ବା
ତ ତୋ ନ ଦୁକ୍‌ଖମନ୍ୱେତି ଚକ୍କଂ ବ ବହତୋ ପଦଂ ॥

ହଉ, ମନଟିକୁ ପ୍ରସନ୍ନ, ପବିତ୍ର ରଖିବାକୁ ହେବ । ସେଇ ପବିତ୍ର ପ୍ରସନ୍ନ ମନ ଘେନି କଥା କହିବା ଓ କାମ କରିବା ଉଚିତ । ଭଲ କଥା । କିନ୍ତୁ ପ୍ରଶ୍ନ ହେଲା - ଘୋଡା ଚଢିବା ନା ଘୋଡା ପଛରେ କି ଘୋଡା ପରି ବିଲୁଆ ପଛରେ ଗୋଡାଇବା ? ଗପଟିଏ ମନ ଭିତରକୁ ଓହ୍ଲେଇ ଆସୁଚି ।

ଏକଦା କୌଣସି ଏକ ରାଜ୍ୟରେ ବହୁ ନଗର, ପାଟଣା, ଜନପଦ, ଗ୍ରାମ ଭିତରେ ଥିଲା ଗୋଟିଏ ଗ୍ରାମ । ସେହି ଗ୍ରାମ ବା ଗାଁଟିରେ ଥିଲା ଜଣେ ସ୍ୱପ୍ନପ୍ରବଣ ମଣିଷ । ଲୋକଟି ବୟସରେ ବଢିଯାଇଥିଲା ସିନା ବୁଦ୍ଧି ତା'ର ପାକଳ ହୋଇ ନ ଥିଲା । ସେ ଦିନେ କୌଣସି ଏକ ସ୍ଥାନରେ ଦେଖିଲା ଜଣେ ଘୋଡ୍‌ସବାର ଦ୍ରୁତବେଗରେ ଘୋଡା ଝପଟାଇ ଚାଲିଗଲା । ବାହନଟିର ଗତିରେ କି ବେଗ, କି ତେଜ! ତା'ର ମନ ହେଲା, ତାଙ୍କୁ କେମିତି ଏଭଳି ବାହନଟିଏ ମିଳନ୍ତା କି! ମିଳିଗଲେ ସେ ସେଥିରେ ସେମିତି ବେଗରେ ଓ ଫୂର୍ତ୍ତିରେ ଯା' ଆସ କରନ୍ତା । ବୁଝିଲା ସେଇ ବାହାନଟି - ଅଶ୍ୱ, ଘୋଟକ, ଘୋଡା, ବାଜୀ ଆଦି ନାନା ନାମରେ ପରିଚିତ । ଭାବିଲା ଠିକ୍ କଥା, ଏଇ ଜୀବଟି ମିଳିଗଲେ ଜଣେ ବାଜିମାତ୍ କରିନେବ ବୋଲି ତାକୁ 'ବାଜୀ' ନାଁ ଦିଆଯାଇଛି ବୋଧହୁଏ । ବୁଝାଇବା ଲୋକଟି ପୁଣି କହିଲା - 'କିନ୍ତୁ ଏହା ଘୋଡା ନାମରେ ଜଣାଶୁଣା । ତୁ ଏଥିରୁ ଗୋଟିଏ କିଣିବୁ କି ?'

ଲୋକଟି ଭାରି ଖୁସି ହୋଇଗଲା । ଭାବିଲା ଇଏ କେମିତି ମୋ' ମନକଥା ଜାଣିଲା ? ଯଦି ମୋ ମନକଥା ଜାଣିପାରୁଛି, ପୁଣି ଏଇ ଜନ୍ତୁଟି ବିଷୟରେ ବି ଏତେ କଥା କହୁଛି, ସେ ନିଶ୍ଚୟ ଏକୁ ପାଇବାର ବାଟ ବତାଇ ଦେଇପାରିବ । କହୁଥିବା ଲୋକଟି ଇଆର ମନକଥା ଠଉରାଇ ନେଇ କହିଲା - 'ଦେଖ୍, କଥାରେ ଅଛି ବାନ୍ଧିଲା ଘୋଡା ଦାନାଖାଏ । ତୁ ତାକୁ ପୋଷିପାରିବୁଟି ?'

ମନ ତ ଘୋଡା ପାଇଁ ହାଇଁ ପାଇଁ ହେଉଥିଲା । କହିଲା - ହଁ, ହଁ, ମୁଁ କ'ଣ ଖାଉନି, ତାକୁ କାହିଁକି ଦେଇ ପାରିବିନି ? ଆଉ କି କି ଅସୁବିଧା ଅଛି କହିବଟି ।

ସେ କହିଲା - 'ମନ ଡିଆଁ ମାରିଲାଣି ପରା । ଯା' କିଣ । କିନ୍ତୁ ମନେରଖ । ଘୋଡା ଛ'ଟଙ୍କାକୁ ଦାନା ନ'ଟଙ୍କା ବୋଲି କଥାଟିଏ ଅଛି । ଦେଖ୍, ତା'ର ଦାମ୍ ମଧ୍ୟ କିଛି ଊଣା ନୁହେଁ । ଭାରି ଦାମିକା ଜନ୍ତୁଟାଏ । କଥାରେ ଅଛି ପରା ଘୋଡାଚଢ଼ାଠାରୁ ସମ୍ପତ୍ତି ନାଇଁ କି ଘରପୋଡିଠାରୁ ବିପତ୍ତି ନାହିଁ । ଧନୀ ଲୋକେ ଘୋଡା ରଖନ୍ତି । ତୋର ଅଣ୍ଟିରେ ବଳ ଅଛି ତ ?'

ଲୋକଟିକୁ ସମସ୍ତେ ବୋକାବନାଇ ମଜା ନିଅନ୍ତି । ସେକଥା ସେ ଜାଣେ । ଭାବିଲା- ମୁଁ କ'ଣ ସତରେ ବୋକା ନା କ'ଣ ମ, ଇଏ ମୋତେ ସତ ଓଲା ଭାବି ଏଣୁତେଣୁ କହି ଭୁଲାଉଚି । ପଚାରିଲା - 'ହଉ ଭାଇ । ତୋ କଥା ଠିକ୍ ଯେ, ମତେ ଖାଲି କହି ଦେ ଘୋଡା କୋଉଠି ମିଳିବ ।'

ଲୋକଟି ଉତ୍ତର ଦେଲା - 'ଯାଆ ହାଟ ବଜାରରେ ବୁଝି ମୂଲଚାଲ କର୍ ।' ଏତକ କହି ସେ ଚାଲିଗଲା । ସେଇ ବୋକା ଲୋକଟି ଗଲା । ହାଟ ବଜାର ବୁଲି ବୁଲି ପଚାରିଲା । ଲୁଗା ଦୋକାନଠାରୁ ପରିବା, ଏପରିକି ପାନ ଦୋକାନ ଯାଏ ପଚାରି ବୁଲିଲା । ଜମିବାଡି ତକ ବିକି ଟଙ୍କା ଥଳିଟିଏ ଧରିଚି । ଜଣେ ଚତୁର ଲୋକ ତା' ଗତିବିଧି ଓ କଥାଭାଷାରୁ ତା' ବୁଦ୍ଧି ତଉଲି ନେଲା । ତାକୁ ଟିକିଏ ଅଣ ଆଡିଆ ଜାଗାକୁ ଡାକି ନେଇ କହିଲା - 'ଦେଖ ଏମାନେ ଥିଲେ ବି କହିବେନି । ଲୁଚାଇ ରଖିଥିବେ । କାଇଁକି ନା ଘୋଡାଟା ବଡ ଦୁର୍ଲଭ ଜନ୍ତୁ । ତମେ ତମ ଗାଁଠୁ ଏଇ ହାଟ ଯାଏ କେତେ ବଳଦ, ମଇଁଷି ଦେଖୁଚ । ଘୋଡାଟାଏ ଦେଖିଲଣି ? ମୁଁ ସେଇ ବ୍ୟବସାୟ କରେ । କିଣିବ ତ ତମକୁ ଗୋଟାଏ ଦେଇଦେବି । ତେବେ ଯେତେ ଶସ୍ତାରେ ଦେଲେ ବି ଟଙ୍କା ଚାଳିଶ ପଚାଶ ହଜାରରୁ କମ୍ ପଡିବନି ।' ଏତକ କହି ଚତୁର ଲୋକଟି ବୋକାଲୋକ ଆଡକୁ ଅନାଇଲା ।

ଘୋଡା ଦର ଶୁଣି, ବୋକା ଲୋକଟିର ମୁହଁ ଶୁଖିଗଲା । ତା' ହାତ ଧରି ପକାଇ କହିଲା - 'ଭାଇ, ଗୋଟାଏ କିଛି କର । ମୋର କିନ୍ତୁ ଘୋଡାଟିଏ ଦରକାର । ନିହାତି ଦରକାର ପରା । କିନ୍ତୁ ଏତେ ପଇସା କହୁଚ ଯେ, କେମିତି କଅଣ କରିବି ? ମୋ ବୁଦ୍ଧି ବାଉଳା ହୋଇଯାଉଛି ।'

ଚତୁର ଲୋକଟି ଜାଣିଗଲା ଇଆର ମନ କାଉଳାକୁ ବୁଦ୍ଧି ବାଉଳା । କହିଲା - ଉପାୟ ଅଛି । ତେବେ ତମେ ଆଉ କାହାକୁ ଇଆର ସୁରାକ୍ ଯେମିତି ନଦିଅ । କଥା ଦେବ ତ କହିବି ।

ଲୋକଟି ତ ବୋକା, ତହିଁକି ପୁଣି ଉଚ୍ଛନ୍ନ । କଣ କରିବ । ସେଇ ଚତୁର ଲୋକଟିକୁ ବହୁ କାକୁତି ମିନତି କରି କହିଲା- ମୁଁ ସତ୍ୟ କରୁଛି । ତ୍ରିବାର ସତ୍ୟ କରୁଛି । ଆଖି ଛୁଉଁଛି । କାହାରିକି କହିବିନି । କଥାଟା କାନକୁ ଦିକାନ ହେବନି । ମତେ ସରଳ ଉପାୟଟିଏ ଥିଲେ ବତାଇ ଦିଅ ।

ଚତୁର ଲୋକଟି କାଇଦାରେ କଥା ଆଦାୟ କରି ଜାଣେ । ବୁଝିନେଲା ଲୋକଟି ପାଖରେ କେତେ ଟଙ୍କା ଅଛି । କହିଲା - ଦେଖ 'ଭାଇ, ଏତିକି ଟଙ୍କାରେ ଘୋଡ଼ା କୋଉଠି ହେଲେ ମିଳିବ ନାହିଁ । ତେବେ ଗୋଟିଏ କାମ କରିବା । ଘୋଡ଼ା ଡିମ୍ବଟିଏ ତମ ପାଇଁ ଯୋଗାଡ଼ କରିଦେବି । ତମେ ତାକୁ ଯତ୍ନରେ ନେଇ ଘରେ ରଖିବ । ସେଥିରୁ ଛୁଆ ଘୋଡ଼ାଟିଏ ବାହାରିବ । କେମିତି ତାକୁ ଉଷୁମାଇବାକୁ ହେବ ବତାଇ ଦେବି । ସେଇ

ଛୁଆଟିକୁ ତମେ ଖୁଆଇ ପିଆଇ ବଢ଼ାଇବ । ତା'ପରେ ତ ସେ ପୋଷା ମାନିଯିବ । ତେଣିକି ତମେ ମନ ଇଛା ତା' ପିଠିରେ ବସି ବୁଲିବ । କିନ୍ତୁ କାମଟି ବଡ଼ ଗୋପନରେ କରିବାକୁ ହେବ । କାହା ନଜର ପଡିଗଲେ ସବୁ ବିଗିଡ଼ି ଯିବ ।'

ଚତୁର ଲୋକଟି ବୋକା ଲୋକଟିଠାରୁ ଟଙ୍କା ତକ ରଖିନେଲା । ଗୋଟିଏ ବୋଝରେ ଭଲଭାବରେ ନଡ଼ାକୁଟାରେ ବାନ୍ଧିବୁନ୍ଧି ତା ଅପୂର୍ବ ଦ୍ରବ୍ୟଟି ଧରାଇ ଦେଲା । ସେତେବେଳକୁ ବେଳ ବୁଡ଼ି ଆସିଲାଣି । ଝିପି ଝିପି ବରଷା ହେଉଛି । କହିଲା - ଦେଖ ଭାଇ ଏଇଟି ବଡ଼ ଯତ୍ନରେ ନେଇ ବେଗେ ଚାଲିଯାଅ । ମୋ' ପାଖରେ ଏଇ ଗୋଟିକ ଥିଲା । ଆଉ କେଉଁ ଗରାଖ ଆସି ମାଗିଲେ, ଅଧିକ ଧନ ଯାଚିଲେ କେମିତି ନାହିଁ କରିବି ! ବରଂ ତମକୁ ଦେଇ ପାରିବିନି ।

ତା' କଥା ଶୁଣି ବୋକା ବୋଝଟି ଧରି ତରବର ହେଲା ବାହାରି ଯିବାକୁ । ଚତୁର ଲୋକଟି ହୁସିଆର କରାଇ ଦେଲା - 'ଦେଖ ଭାଇ । ବରଷା ପଡୁଛି । ବିଲବାଟରେ ଯିବ । ସରୁ ସରୁ ହିଡ଼ । ଗୋଡ ଖସିଗଲେ, ତମେ ପଡ଼ିଲେ ପଡ଼ ପଛକେ ଏଇଟା ଯେମିତି ପଡି ନଯାଏ । ଇଆ ଭିତରେ ଛୁଆ ଘୋଡ଼ାଟି ବଢି ଆସିଲାଣି । କଅଁଳ ହାଡ଼ । ପଡ଼ିଗଲେ ଭାଙ୍ଗିଯିବ । ପୁଣି ଯଦି ଡିମ୍ବଟି ଫାଟିଯାଏ, ସେଇଟି ତା' ଭିତରୁ ଦଉଡି ପଳାଇବ । ମତେ ଆଉ ସେତେ ବେଳେ କିଛି କହିବ ନାହିଁ ।'

ଲୋକଟି ସବୁ ଶୁଣିଲା । ଗହୀର ବିଲବାଟେ ଗଲାବେଳେ ପାଦ ଚିପିଚିପି ହିଡ଼େ ହିଡ଼େ ଚାଲିଥାଏ । ବଡ ଯତ୍ନରେ ମୁଣ୍ଡାଇଥାଏ, ସେଇ ଦୁର୍ଲଭ ଦ୍ରବ୍ୟଟିକୁ । ଦୁର୍ଯୋଗକୁ ହାତ କାହାର । ଏମିତି ଅବେଳ ପଡିଲା ଯେ, ଗୋଟାଏ ଜାଗାରେ ଲୋକଟିର ଗୋଡ଼ ଖସି ଶକତ କଚଡାଏ ଖାଇଲା । ବୋଝଟି ଥୋଡାଏ ଦୂରରେ ପଡିଲା । ସେଇଠି ବିଲୁଆଟାଏ ବୁଦା ମୂଳେ ଥିଲା । ମଣିଷର ପଡିବା ଶବ୍ଦରେ ଦଉଡି ପଳାଇଲା । ଲୋକଟି ଉଠି ଦେଖିଲା ତା' ଡିମ୍ବଟି ଫାଟି ନଡା, କୁଟା ଭେଦି ପାଣି ବାହାରି ଯାଉଛି । - ମୋ' ଘୋଡ଼ାଛୁଆ ପଳାଇଲାରେ ବୋଲି ପାଟିଟାଏ କରି, ସେ ଉଠିପଡ଼ି ଧାଇଁଲା ।

ପଛରେ ଆସୁଥିବା ଲୋକେ ବୁଝିପାରିଲେ ନାଇଁ ଲୋକଟା ବିଲୁଆ ପଛେ ପଛେ ଏମିତି ପାଗଳ ପରି ଧାଇଁଛି କାହିଁକି । ବିଲୁଆଟା ବି ଭାରି ଦୁଷ୍ଟ । ଧରା ନଦେଇ କୁଆଡେ ଧାଇଁଯାଇ ଛପିଗଲା । ଲୋକଟି ଫେରି ଆସି ତା' ବୋଝଟି ପାଖରେ ବସି କାନ୍ଦିଲା - 'ଆହା ମୋ' ଘୋଡ଼ା ଡିମ୍ବଟି ଫାଟିଗଲା ଲୋ । ମୋ କରମ ତ ଫଟା , ସିଏ ରହନ୍ତା କେମିତି ?' ଲୋକେ ବୋଝରୁ ଚିଜଟିକୁ ଫିଟାଇ ଦେଖିଲେ - ପଚା ପାଣିକଖାରୁଟାଏ !

ଇଂରାଜୀରେ ଗୋଟିଏ ପ୍ରବାଦ ଅଛି, ଯାହାକୁ ଓଡିଆରେ କହିଲେ ହେବ - ମନକାମନାଗୁଡିକ ଯଦି ଘୋଡ଼ା ହୋଇଥାନ୍ତେ, ତେବେ ସବୁ ଭିକାରି ସେଥିରୁ ଗୋଟିଏ ଗୋଟିଏ ଘେନି, ତା' ଉପରେ ବିରାଜମାନ କରି ଥାଆନ୍ତେ । ପାଣି ପାଇଲେ ମଞ୍ଜି ଭୂଇଁ ଭିତରୁ ଗଜୁରି ଉଠିଲା ଭଳି, ଆତ୍ମଶକ୍ତି ଜାଗ୍ରତ ହେଲେ ମଣିଷ ଭିତରେ ଥିବା ସାମର୍ଥ୍ୟଗୁଡିକ

ବାହାରି ପଡ଼େ ଓ ପ୍ରକୃତି ମଣିଷ ଭିତରେ, ତାର ଆବଶ୍ୟକ ସାମର୍ଥ୍ୟ ଓ ଗୁଣମାନ ଭରି ଦେଇଥାଏ । ସଦ୍‌ଗୁଣ ଓ ସତ୍‌ପ୍ରକୃତିକୁ ସ୍ୱଭାବ ଚରିତ୍ରରେ ଫୁଟାଇଲେ ସାମର୍ଥ୍ୟ ଅନୁକୂଳତା ପାଇ ଅଭୀଷ୍ଟ ଆଡ଼କୁ ଆଗେଇ ଯିବାର ବଳ ଦେବ । ବାଟ କଢ଼ାଇ ନେବ । କିନ୍ତୁ ଲକ୍ଷ୍ୟ ବା ଅଭୀଷ୍ଟଟି କଲ୍ୟାଣକର ହେଲେ ମଙ୍ଗଳ । ତାହା ଭାବିଚିନ୍ତି ସ୍ଥିର କରିବାକୁ ହୋଇଥାଏ । ସଂକଳ୍ପ ଓ ଯୋଜନା କରି ସେ ଦିଗରେ ଅଗ୍ରସର ହେବାକୁ ହୁଏ । ନିର୍ବୋଧ ପରି ଏଣେ ତେଣେ ମାଡିଯିବା ଯେମିତି ଦିଗ୍‌ଭ୍ରାନ୍ତ କରିଥାଏ, ନିର୍ବେଦ ନିରୁଦ୍ୟମ ହୋଇ ବସିଥିବା ସେହିପରି କ୍ଳୀବତା ବା କାପୁରୁଷପଣରେ ଗଣାହୁଏ ।

କେହି ପରବୁଦ୍ଧି ମାଗି ପୌରୁଷ ଅର୍ଜେ ନାହିଁ । ପର ବୁଦ୍ଧିରେ ପାହୁଣ୍ଡେ, ମାଗି ଆଣିଲା ତିଅଣ ହାପୁଡାଏ, ଶିଖେଇ ଦେଲା ବୁଦ୍ଧି ଥରକେ ସରେ । ନିଜର ବୁଦ୍ଧି, ବିବେକ, ଜ୍ଞାନ ଓ ଉତ୍ସାହ ବଳରେ ଜୀବନର ଲକ୍ଷ୍ୟ ପୂରଣ କରିବାକୁ ହୁଏ । ନିଜ ଭିତରେ ଶକ୍ତି ଅଛି, ସାମର୍ଥ୍ୟ ଅଛି । ତାକୁ ଜାଗ୍ରତ କରିବା ଦରକାର । ଆତ୍ମଶକ୍ତିରେ ପୌରୁଷ ଫିଟେ । ତାରି ବଳରେ ଦୁର୍ଭାଗ୍ୟକୁ ଜିଣି ହେବ, ସୌଭାଗ୍ୟକୁ କିଣି ହେବ । ନିରୁଦ୍ୟମ ହୋଇ ବସିବା ଦୋଷ । କିନ୍ତୁ ଭାଗ୍ୟ ଗଢିବାକୁ ସଂଗ୍ରାମ କରି, ସଯତ୍ନ ଉଦ୍ୟମ କରି ଯଦି ଦୈବାତ୍ ଅସଫଳତା ଲୁଟିଗଲା, ସେଥିକି କେହି ନିନ୍ଦିବେ ନାହିଁ । ଏଥିପାଇଁ କୁହାଯାଇଛି - 'ଦୈବଂ ନିହତ୍ୟ କୁରୁ ପୌରୁଷମାତ୍ମଶକ୍ତ୍ୟା, ଯତ୍ନେ କୃତେ ଯଦି ନସିଦ୍ଧ୍ୟତିକୋଽତ୍ର ଦୋଷଃ ।' ଯଦି ମନ କହୁଛି ଘୋଡ଼ା ଚଢ଼ିବି, ତେବେ ସେ ଦିଗରେ ଉତ୍ସାହର ସହିତ ସାମର୍ଥ୍ୟ ଖଟାଇ ଉଦ୍ୟମ କରିବା ଲୋଡ଼ା । ଆଉ କିଏ ଘୋଡା ଚଢୁଛି ବୋଲି ଈର୍ଷାରେ ଜଳିଯିବାର ନୁହେଁ କି କାହା ଘୋଡ଼ା ପଛରେ ଗୋଡ଼ାଇବାର ନୁହେଁ । ଏଥିରୁ କୌଣସିଟି ପୌରୁଷ ନୁହେଁ ବରଂ ଲୋକହସା ହେବାର ବାଟ । ତେଣୁ ଘୋଡ଼ା ଚଢ଼ାର ମନ ବା ଶ୍ରୀ ସମ୍ପଦ ଅର୍ଜନ କରି ଉପଭୋଗ କରିବାର ଇଚ୍ଛାକୁ ଦୈବ ବା କପାଳର ଆଳ ଦେଖାଇ ଦିଗ୍‌ଭ୍ରଷ୍ଟ କରିବା ଠିକ୍ ନୁହେଁ । ଦବାଇ ଦେବା ବି ଅନୁଚିତ୍ । ସେଥିପାଇଁ ଆତ୍ମଶକ୍ତି ଜାଗ୍ରତ କରି, ସଂକଳ୍ପ ବଦ୍ଧ ହୋଇ, ଉତ୍ସାହର ସହିତ, ତାକୁ ପୂରଣ କରିବା ବିଧେୟ । 'ଉଦ୍ୟମେନ ହି ସିଦ୍ଧନ୍ତି କାର୍ଯ୍ୟାଣି, ନ ମନୋରଥୈଃ ।' ଘୋଡ଼ା ଚଢ଼ାର କାମନା କେବଳ ମନୋରଥରେ ରହି ନ ଯାଉ ।



◆ ◆ ◆



## ଦେଖି ପାରୁନି

ମୁଁ ଜଣକୁ ଦେଖି ପାରୁନି । ଅର୍ଥାତ୍ ଦେଖିଲେ ଖୁସି ହୋଇ ପାରୁନି । ତା'ର ସୁଖ, ଆନନ୍ଦ, ଉନ୍ନତି ଦେଖିଲେ, ତା'ର ପ୍ରଶଂସା ଶୁଣିଲେ, ମୋ ମନ ରବେଇ ଖବେଇ ହେଉଛି । ମୋ ମନ ଭିତରଟା ଅସହିଷ୍ଣୁତାରେ କୁହୁଳୁଛି । ମାନେ - ଈର୍ଷା କରୁଛି । ଏଥିରୁ ମତେ କଅଣ କଅଣ ମିଳୁନି ? ସୁଖ ମିଳୁନି, ଆନନ୍ଦ ମିଳୁନି ବରଂ ମନଟା ଅଶାନ୍ତିରେ ଛଟପଟ ହେଉଛି । ମୁଁ ଯାହାକୁ 'ଦେଖିପାରୁନି' ଅର୍ଥାତ୍ ଈର୍ଷା କରୁଛି, ତା'ର କ'ଣ ହେଉଛି ?

ମୁଁ ହୁଏତ ଭାବିବି - ମଣିଷ ହାଇ ଗଛର ଛାଇ, ଏଥିରେ ତ କେହି ଉଧାନ୍ତି ନାହିଁ । ସେ କେମିତି ଉଧେଇବ ? ତା'ର କିଛି ଉନ୍ନତି କି ଭଲ ହେବ ନାହିଁ । ମୋ ଈର୍ଷାରେ ସେ ଓ ତା'ର ସୁଖ, ଶାନ୍ତି ଜଳି ପୋଡ଼ି ଯିବ । ପାଉଁଶ ହୋଇଯିବ । ତା'ର ଉନ୍ନତିର ପଥ ଅବରୁଦ୍ଧ ହୋଇଯିବ । କିନ୍ତୁ ସତରେ କ'ଣ ଏତେ କଥା ହେବ ? କୋଉଠି ଏମିତି ହେବାର ଦୃଷ୍ଟାନ୍ତ ଅଛିକି ? ଖୋଜିଲେ ହେବ । କୋଉଠି ହାବୁଡ଼ା ଝଟକା ଗୋଟାଏ ଗୋଟାଏ ଦୃଷ୍ଟାନ୍ତ ହାବୁଡ଼ି ଯାଇପାରେ । କିନ୍ତୁ ସେପରି କିଛି ମିଳିବାର ସମ୍ଭାବନା ଅତ୍ୟନ୍ତ କ୍ଷିଣ । ମିଳି ନପାରେ ମଧ୍ୟ । ତା' ହେଲେ ମୁଁ କ'ଣ କରିପାରିବି ?

ତା’ ବିରୁଦ୍ଧରେ ଚକ୍ରାନ୍ତ କରିପାରିବି । ତାକୁ ଭଲପାଉଥିବା ଲୋକଙ୍କ ମନକୁ ତା’ଠାରୁ ଭଗାଇ ନେବାକୁ ସବୁଆଡୁ ଚେଷ୍ଟା କରିବି । ତା’ର କ୍ଷତି ଚାହୁଁଥିବା ଲୋକଙ୍କୁ ଖୋଜି ଖୋଜି ସଂଗଠିତ କରିବି ଏବଂ ସେମାନଙ୍କୁ ଘେନି ତା’ର ଯଥା ସମ୍ଭବ କ୍ଷତି କରିବାକୁ ଓ ତା’ର ଉନ୍ନତିର ପଥଗୁଡ଼ିକୁ ଅବରୁଦ୍ଧ କରି କରି ଯିବାକୁ ପାରୁପର୍ଯ୍ୟନ୍ତ ଲାଗିପଡ଼ିବି । ତା’ର ସାମର୍ଥ୍ୟ, ବିଚକ୍ଷଣତା ଥିଲେ ସେ ମଧ୍ୟ ସବୁଥିରୁ ନିଜକୁ ବଞ୍ଚାଇ ଆଗେଇ ଆଗେଇ ଯିବା ସମ୍ଭବ । ତା’ ଉଦ୍ୟମର ଟାଣରେ ମୋର ସମସ୍ତ ଚକ୍ରାନ୍ତର ଚକ ବିପରିତ ଦିଗରେ ଘୁରି ଆସି ମତେ ଗ୍ରାସ ବି କରିଦେଇପାରେ । କ୍ଷତବିକ୍ଷତ ଓ ଅପଦସ୍ଥ କରିପକାଇ ପାରେ । ଅଥବା ତା’ର ହିତାକାଙ୍କ୍ଷୀମାନେ ମୋ ଆଡୁ ହେଉଥିବା ଯାବତୀୟ ଅପଚେଷ୍ଟାକୁ ପ୍ରତିହତ କରିକରି ତାକୁ ସାଙ୍ଗରେ ଘେନି ଆଗକୁ ଆଗକୁ ନିରାପଦରେ ଘେନିଯାଇ ପାରନ୍ତି । ମୋ ସହିତ ମିଶି ତା’ର କ୍ଷତି ଚାହୁଁଥିବା ବା କ୍ଷତି କରିବାକୁ ବାହାରିଥିବା ଲୋକେ ତା’ ଆଡୁ କିଛି କିଛି ଆନୁକୂଲ୍ୟ ପାଇ, କିମ୍ବା ତା’ର ହିତାକାଙ୍କ୍ଷୀମାନଙ୍କର ପ୍ରଭାବରେ ପ୍ରଭାବିତ ହୋଇ ସେପଟକୁ ଯାଇ ମୋ ବାଟରେ କଣ୍ଟା ହୋଇପାରନ୍ତି । ଏପରି ସମ୍ଭାବନାଗୁଡ଼ିକୁ କ’ଣ ଅଣଦେଖା କରିହେବ ?

‘ଯିଏ ଯାହାକୁ ଦେଖି ନପାରେ ଅନ୍ଧାର ରାତିରେ ଉକୁଣୀ ମାରେ’ - ମାନେ କ’ଣ ? ଅନ୍ଧାର ରାତିରେ କ’ଣ ଉକୁଣି ଦେଖିହେବ ନା ମାରିହେବ । ତଥାପି ମୁଣ୍ଡକୁ ଟଣା ଟଣିକରି ବାଳକୁ ଝିକାଝିକି କରି କିଛି ଗୋଟାଏ ନଖରେ ଟାଣି ଆଣି ଫୁଟାଇ ଦେଇ - ‘ହେଇଟି ଦେଖ କେତେ ଉକୁଣି ତୋ ମୁଣ୍ଡରେ’ ବୋଲି କହି ହେବ ତ !

ଅନ୍ୟର ଗୁଣରୁ ଖୁଣ କାଢ଼ିବା କି କାହାର ଖୁଣ ଖୋଜି ଖୋଜି ବଖାଣିବା ଲୋକଙ୍କୁ କେହି ପ୍ରସଂଶା କରିବା ଭଲ କହିବା ଅପେକ୍ଷା, ବରଂ ଖୁଣରେ ଗୁଣଟିଏ ନଜରକୁ ଆସିଲେ ତାକୁ ବାଛି ଦେଇ ସଜାଡ଼ି ଦେବାର ବା ସୁଧାରି ଦେବାର ଲୋକଙ୍କୁ ସେତିକି ମିଳେ । ଭଲ ଲୋକ, ବିଚାରବନ୍ତ ମଣିଷମାନେ କହନ୍ତି- ନିର୍ଗୁଣ ନିରାକାର, ଅନାମ ଅନାସକ୍ତ ଭଗବାନ ମଧ୍ୟ ଅବତାରଟିଏ ହୋଇ ମହୀମଣ୍ଡଳକୁ ଆସିଲେ, ତାଙ୍କର ଅକାର ବା ରୂପ ତ ରହିବ; ତା ସହିତ ନାମ, ଗୁଣ ଆଦି ମଣିଷଠାରେ ଯାହା ଯାହା ସାଧାରଣ କଥା ସେତକ ନରହିବ ବା କେମିତି ? କୋଉଠି ଜନ୍ମ ଘେନିଲେ, ବାପା-ମା, କୁଟୁମ୍ବ, ବନ୍ଧୁଠାରୁ, ବିବାହକଲେ ସ୍ତ୍ରୀ, ପିଲାଛୁଆ ଯାଏ ତ ହେବେ । ପୁଣି ସାଙ୍ଗସାଥୀ ବା ନହେବେ କେମିତି ? ବାଛି ବସିଲେ ତାଙ୍କଠାରେ ମଧ୍ୟ ବହୁତ ଖୁଣ ଦେଖିହେବ, ନଥିଲେ ନହେଲେ ଲଗେଇ ହେବ । ମର୍ଯ୍ୟାଦାପୁରୁଷ ଶ୍ରୀରାମ ବି ଏଥିରୁ କ’ଣ ତ୍ରାହି ପାଇଛନ୍ତି ? ଜଣେ ଯଦି ଏଇ ଭଳି ସୁଭାଷିତ ବା ଦୃଷ୍ଟାନ୍ତଗୁଡ଼ିକୁ ପାସଙ୍ଗରେ ନପକାଇ କାହା ପ୍ରତି ଈର୍ଷାଳୁ ହୋଇ ତା’ର

ଦୋଷ ଦେଖାଇବାରେ ଲାଗିଯାଏ, ତେବେ ଲୋକେ ସେଇ ଜଣକର ଦୋଷଗୁଡ଼ିଏ ଖୋଜି ପକାଇ କହନ୍ତି - ଚାଲୁଣି କହୁଛି ଛୁଞ୍ଚିକୁ ! ଈର୍ଷାପରବଶ ହୋଇ ଜଣକର ବିରୁଦ୍ଧରେ କିଛି କହିଯାଉଥିବା ବା କରିଯାଉଥିବା ଲୋକଟି ବେଳେ ବେଳେ ଏକୁଟିଆ, ଅଣ ଆଡ଼ିଆ ହୋଇଯାଏ । ଏମିତି ସ୍ଥିତିରେ ମନଭିତରେ କହୁଳୁଥିବା ଈର୍ଷା ଭିତରଟାକୁ ଜାଳି ପକାଏ । ଭାରି କଷ୍ଟଦିଏ । ଏମିତି ଦହଗଞ୍ଜ କ'ଣ କୌଣସି ଈର୍ଷାଳୁ କୋଉଠି ଭୋଗି ନାହାନ୍ତି ? ଆୟୁର୍ବେଦ କହେ- ମନରେ ଈର୍ଷା ଥିବାବେଳେ ଖାଇ ବସିଲେ, ଖାଇବା ଅନ୍ନ ହଜମ ହୁଏନି । ଦେହରେ ଲାଗେନି । ଅନୁଭବୀ ଲୋକେ କହନ୍ତି - ଈର୍ଷାର ଡହକରେ ମନ ଭିତରେ ସୁଖ, ସନ୍ତୋଷ, ଶାନ୍ତି ଆଦି ରହିପାରିନ୍ତି ନାହିଁ । ମୁଁ, ଅର୍ଥାତ ମୋ ଭିତରର ମନ ହୁଏତ କହିବ - ଚାଲମ ସାହିତ୍ୟ ଉପରେ ଆଖିପକାଇବା ।।

ସାହିତ୍ୟ ଭିତରେ ଯଦି କଥାସାହିତ୍ୟ, ବିଶେଷତଃ ଉପନ୍ୟାସ ଏବଂ ନାଟକ କାବ୍ୟ ଆଦିକୁ ଦେଖିବା, ସେଥିରେ ଖଳ ଚରିତ୍ର ଫୁଟାଇବା ପାଇଁ 'ଈର୍ଷା' ଭଳି ଦୁର୍ଗୁଣଟିକୁ ନିଆଯାଏ । କାହାଣୀକୁ ଆଗେଇବାରେ ଈର୍ଷାର ଚକ୍ରାନ୍ତ ଓ ମାୟାଜାଲ ବିସ୍ତାରଲାଗି ଅନ୍ୟ ଚରିତ୍ର ଖଞ୍ଜି ବିଷୟ ବସ୍ତୁର ବିସ୍ତାର ଭିତରେ ଉପନ୍ୟାସ, ନାଟକ ବା କାବ୍ୟର ନାୟକର ଚରିତ୍ରକୁ ଉଜ୍ଜ୍ୱଳ କରି ଦେଖାଇ ଦିଆଯାଇଥାଏ । ଈର୍ଷାଳୁ ଖଳନାୟକର ହୀନସ୍ତା ଦେଖି ପାଠକ ବା ଦର୍ଶକମାନେ ଖୁସି ହୁଅନ୍ତି । ଈର୍ଷାଳୁ ଖଳନାୟକର ବିଜୟରେ ଦର୍ଶକ ବା ପାଠକ ଖୁସି ହେବାର ସମ୍ଭାବନା ନାହିଁ ବୋଲି ତ ଲେଖକମାନେ ଖଳନାୟକର ପରାଜୟ ବା ଅପଦସ୍ଥତା ଦେଖାଇଥାଆନ୍ତି । ପରିବାରରେ 'ସଉତୁଣୀ', 'ଈର୍ଷାଳୁ ଭଉଣୀ', ସାବତ ମା' ଆଦି ଚରିତ୍ରକୁ ନେଇ ମଧ୍ୟ ଯେଉଁ କଥାମାନ ଶୁଣାଯାଏ, ସେଥିରେ ଈର୍ଷାଳୁମାନଙ୍କର ପ୍ରଶଂସା କରାଯାଉଥିବାର ଶୁଣାଯାଏ କି ? ଯଦି ବା କେହି ଜଣଙ୍କର ସ୍ୱାଭାବିକ ଭାବାବେଗ ବୋଲି ସୂକ୍ଷ୍ମ ବିଚାରରେ ଦେଖିପାରନ୍ତି ଓ କହନ୍ତି - 'ହଁ ବିଚରାଟିର ଈର୍ଷା ହେବନି କେମିତି ?' ତେବେ ଏଠାରେ 'ଈର୍ଷା'କୁ ନ୍ୟାଯ୍ୟ ପ୍ରାପ୍ୟରୁ ବା ଅଧିକାରରୁ ବଞ୍ଚିତ ହୋଇ କିଛି କରିପାରୁନଥିବା ଲୋକଟିର ଅନ୍ୟର ବିବେକ ଆଗରେ କାତର ପ୍ରାର୍ଥନା ବା ଅପିଲ୍ ବୋଲି ବିଚାର କରାଯାଇପାରେ ସିନା, କିନ୍ତୁ କେବେ ହେଁ ଈର୍ଷାଳୁ ସ୍ୱଭାବ ବା ଭାବନାକୁ ସମର୍ଥନ ବୋଲି କୁହାଯାଇ ପାରିବ କି ?

ଦୁଇ ଜଣ କିଛି ପାଇବାକୁ ଲାଗିପଡ଼ିଛନ୍ତି, ସେଥିଭିତରୁ ଜଣକର ଇପ୍‌ସିତ ପ୍ରାପ୍ତି ଘଟିଲା । ଯାହା ପାଇବାକୁ ଲାଗିପଡ଼ିଥିଲା, ପାରୁପର୍ଯ୍ୟନ୍ତ ଚେଷ୍ଟା କରି ଶେଷରେ ପାଇଗଲା । ଏଥିରେ ଆରକ ହତୋତ୍ସାହ ହେବା ସ୍ୱାଭାବିକ । କିନ୍ତୁ ତାହା ତା ପାଇଁ ଉଦିଷ୍ଟ ନଥିଲା ଭାବି, ତା'ର ଉତ୍ସାହ ଓ ଉଦ୍ୟମକୁ ଅନ୍ୟଆଡ଼େ, ଅନ୍ୟ କିଛି ପ୍ରାପ୍ତି ପାଇଁ ଲଗାଇଲେ ସିନା କିଛି

ପାଇବ; କିନ୍ତୁ ପାଇଥିବା ବ୍ୟକ୍ତି ପ୍ରତି ଈର୍ଷାଳୁ ହୋଇ, ସେଥିରେ ନିଜକୁ ଜଳାଇଲେ କ'ଣ ବା ପାଇବ? ଉତ୍ସାହ ଓ ଉଦ୍ୟମକୁ ବାଟ କଢ଼ାଇ ଦେବାର ବିଚାର ବୁଦ୍ଧି ଯେଉଁଠି ଥାଏ, ସେଇଠି ଈର୍ଷା ଉଧେଇ ପାରେନାହିଁ । ଆପଣା ଛାଏଁ ଆଡ଼େଇ ହୋଇ ରହିଯାଏ । ଗୋଟିଏ ଗଛରେ କିଛି ଫଳ ଫଳିଛି । ପାଞ୍ଚଜଣ ଲୋକ ତାକୁ ତୋଳିବାକୁ ପହଞ୍ଚିଛନ୍ତି । ସେଥିରୁ ଜଣେ ଯଦି ଭାବିଲା- ମୁଁ ପାଞ୍ଚଜଣରେ ଜଣେ କାହିଁକି ହେବି, ଯାଏ ଆଉ କୋଉଠି ଏମିତି ଗଛଟିଏ ଅଛି ଖୋଜିବି । ସେ ନିଶ୍ଚିତରୁ ଅନିଶ୍ଚିତ ଆଡ଼କୁ ପାଦବଢ଼ାଉଛି ବୋଲି ଲାଗିପାରେ । କିନ୍ତୁ ଅବଶିଷ୍ଟ ଚାରିଜଣ ଯଦି ଫଳତୋଳିବା ବେଳେ କଳି ଲାଗନ୍ତି, ବଣ୍ଟାବଣ୍ଟି ବେଳେ ବାଣ୍ଟ ଠିକ୍ ହେଲା ନାହିଁ ବୋଲି ବିବାଦଉପୁଜି ପିଟାପିଟି ଯାଏ ମାମଲତ ଯାଏ, ତେବେ? ସମର୍ଥ ଲୋକ, ଉତ୍ସାହ ଓ ଉଦ୍ୟମ ଦ୍ୱାରା କିଛି ପାଇବା ବେଳେ, ସେଇ ସ୍ଥଳରେ ହରାଇଥିବା ଲୋକ, ନିଜର ସାମର୍ଥ୍ୟ ବଢ଼ାଇ ଉତ୍ସାହ ଓ ଉଦ୍ୟମ ବଳରେ ତାହା ଅନ୍ୟତ୍ର ପାଇବାର ପ୍ରୟାସ କରିବାରେ ପ୍ରାପ୍ତିର ସମ୍ଭାବନା ଯେତେ ଉଜ୍ଜ୍ୱଳ, ଈର୍ଷାରେ ଘାଣ୍ଟି ହୋଇ, ପାଇଥିବା ଲୋକପ୍ରତି ଅସହିଷ୍ଣୁ ହେଲେ ତା'ର ଯାହା ହସ୍ତଗତ ହୋଇଯାଇଛି, ତାହା ପାଇବାର ସମ୍ଭାବନା କେଉଁଠି ନ୍ୟାୟ ଅନ୍ୟାୟର ତୁଳାଦଣ୍ଡରେ ସିନା ମିଳିପାରେ, କିନ୍ତୁ କେବଳ ଈର୍ଷାରେ ଘାଣ୍ଟିହୋଇ ଆପଣାକୁ କଷ୍ଟ ଦେବା ହିଁ ସାର ହୋଇଥାଏ । ପୁଣି 'ଦେଖି ନପାରିବା' କଥାଟି ଭାରି ତତ୍ତ୍ୱଗର୍ଭକ । ମନ ଭିତରେ ଈର୍ଷା ଜମିଗଲେ ଜଣେ କ'ଣ ବା ଦେଖିପାରିବ !

ଈର୍ଷା ବା ଦେଖି ନପାରିବା ତତ୍ତ୍ୱଟିକୁ ତ ସମାଜ ଓ ସାହିତ୍ୟରେ ଦେଖିଲେ, ଆମେ କ'ଣ କରିବା ?







## ମୋ କଥାଟି ସରିଲା

ବାରିରେ ସୁନ୍ଦର ଛନ୍‌ଛନିଆ ଫୁଲଗଛଟିଏ । ସେଥିରେ ସଂଜେ ସକାଳେ ଖଞ୍ଜି ହୋଇଥାଏ ଗଛେ ଧୋବଲା ଫୁଲ । କିନ୍ତୁ ଦିନେ କଣ ହେଲା ନା ଗଛଟା ମରିଗଲା ।

ଆହା-ହା-ହା କେମିତି ମଲା ମ ?

ମଲା କେମିତିକା ନା, ତାକୁ କାଳିଗାଈ ଖାଇଦେଲା । କେମନ୍ତ ହେ, ଗାଈଟା କାଳି ହେଉ କି ଧୋବଲି କି କସରି, ଛଇଲି ଯାହା ହେଉ ହୋ, ଏମିତି ଗଛେ ଲେଖାଏ ଫୁଲ ହେଉଥିବା, ତହିଁକି ପତରରେ ଛନ୍‌ଛନିଆ ଜୀବନ ଲହଡ଼ି ଭାଙ୍ଗୁଥିବା ଗଛଟାକୁ ଖାଇଦେବା ଲାଗି ସେଇଟା କିଏ ହୋ । ଖାଇବନି ? ତା'ର ପରା ପେଟ ଅଛି । ପେଟ ଥିଲେ ସେଥିକି ଭୋକ ବି ଅଛି । ପୁଣି ଭୋକ ହେଲେ ପାଟି ମଧ୍ୟ ଅଛି । ଅତଏବ ସିଏ ଖାଇବ । ତା'ର କାମ କରିବାକୁ ହାତ ନାହିଁ ବୋଲି ସେ ଖାଇବନି ? ଏମିତି ତ ବହୁତ ଲୋକ ମାଗଣାରେ ଖାଉଛନ୍ତି । ପୁଣି ଖାଇ ଖାଇ ଯିବା ସେମାନଙ୍କର ଖୋଇ ହୋଇଗଲାଣି । କିନ୍ତୁ କାଳି ଗାଈଟା ତ ମାଗଣାରେ ଖାଉନି; କ୍ଷେତକୁ ଗୋବର ଦେଉଛି, ଘରକୁ ନିତ୍ୟାନି ଦେଉଛି, ତଦୁପରି କାଳି ଗାଈଟିଏ । ଗୋଠକୁ ସୁନ୍ଦର । ଗୁହାଳକୁ ସୁଲକ୍ଷଣୀ, ଆଉ ମଧ୍ୟ ଦୁଧିଆଳି । ସେ ପୁଣି ଖାଇବନି ? ଖାଉ, କ'ଣ ହୋଇଗଲା ସେଇଠୁ ?

ହବ କ'ଣ ଏଡେ ସୁନ୍ଦର ଫୁଲଗଛଟି ମରିଗଲା । ବଡ଼ବଡ଼ୁଆଙ୍କଠାରେ, ତୁଳସୀ ଚଉରାରେ, ଠାକୁରଙ୍କଠାରେ, ଫୁଲ ଦିଇଟା ଦେଇ ପୂଜା କରିହେଉଥିଲା ଯେ ସେତକ ବନ୍ଦ । ଏଣିକି ଆଉ କାହା ଗଛରେ ଯାଇ ହାତ ବୁଲାଇବାକୁ ହେବ । ସେଭଳି କାର୍ଯ୍ୟକୁ ଲୋକେ ହୀନ ଦୃଷ୍ଟିରେ ଦେଖିବେ । ଗଛର ମାଲିକ କି ମାଲିକାଣୀ ପଦେ ଅଧେ ପାଟି ହୁଡ଼ି କହି ଦେଇପାରନ୍ତି । ଇଆଠୁ କୋଉ ଘଟଣା ବା କାଣ୍ଡଟା ଅଧିକ ଅପମାନ ବିନ୍ଧିଲା ଭଳି ଅଛି କହିବଟି ।

ତେବେ ଦୋଷ କାହାର ? ମାଗ କୈଫିତ୍ ସେ କାଳି ଗାଈକି । କି ଜବାବ ସେ ଦେବ ? ମାଗୁନ, ତା' ପାଖରେ ଜବାବ ନାଇଁ କି ।

କହିବ- ମୋତେ ଗଉଡ଼ ଜଗିଲା ନାହିଁ ।

ଠିକ୍ କଥା, ଗଉଡ଼ର କାମ ଗାଈକୁ ଘାସ ଥିବା ଗୋଚରଭୂଇଁମାନ ଖୋଜି ସେଠାରେ ଚରାଇବା । ଗୋଠରେ ଚରୁଥିବା ବେଳେ ବଇଁଶୀ ବଜାଇ ଶୁଣେଇବା । ତା' ହେଲେ ଗାଈମାନଙ୍କର ଚରିଥିବା ଘାସ ତୃଣାଦି ହଜମ ହେବ । ମନ ଫୂର୍ତ୍ତି ରହିବ । ଅବଶ୍ୟ ଆଜିକାଲି ଗୋଚରଜମି ମିଳିବା କଷ୍ଟ । ନାନାଦି ଆଳ, ନ ହେଲେ ବଳ ଦେଖାଇ କିଛି କିଛି ଚତୁର ଲୋକ ଗାଆଁ ଗାଆଁ ସ୍ଥାନ ସ୍ଥାନ ବୁଲି ସରକାରୀ ଜମିମାନ ଦଖଲ କରିଯାଉଛନ୍ତି । ସେଥିରେ ଗୋଚର, ଗାଆଁ ଖଳା, ଗାଆଁ ସ୍କୁଲ, ଡାକ୍ତରଖାନା, ମଶାଣି ଇତ୍ୟାଦି ପାଇଁ ରଖାଯାଇଥିବା ଜମିମାନ ସବୁ ଖପିଯାଉଛି । ଗଉଡ଼ ବିଚରା ଗୋରୁ ଚରାଇବା ଲାଗି ଘାସ ଥିବା ଚରାଭୂଇଁ ପାଇବ କୋଉଠୁ । ତହୁଁ ସଞ୍ଜ ହେଲେ ଗୁହାଳରେ ପୂରାଇ, ସେଠି କୁଟା କେରାଏ କେରାଏ ଦେବ । ସେ ଏତକ ବା ନ କରିବ କାହିଁକି ? ବରତନ ପାଉଛିଟି । ପଚରାଯାଉ- 'କର୍ତ୍ତବ୍ୟରେ ଏହିପରି ଗୁରୁତର ଅବହେଳା ଲାଗି କାହିଁକି ତା' ପ୍ରତି ସମୁଚିତ ଦଣ୍ଡବିଧାନ କରା ନ ଯିବ ? ପୁଣି ମନକୁ ପାଇଲାଭଳି ଜବାବ ନ ପହଞ୍ଚିବା ଯାଏ ତାକୁ ବୃତ୍ତିରୁ ନିଲମ୍ବିତ କରାଯାଉ । ଗଉଡ଼ର ବି ଉତ୍ତର ଅଛି । ସେ କହିବ- 'ମୋତେ ସାନ ବୋହୂ ଖାଇବାକୁ ଦେଲାନାହିଁ ।''

ଖାଲି ସାନବୋହୂ ହିଁ ଖାଇବାକୁ ଦେବାର କଥା କି ? କାହିଁକି, ଅନ୍ୟ ବୋହୂମାନେ କ'ଣ ନଥିଲେ ? କେବଳ ସିଏ ହିଁ କାହିଁକି ଦେବ ?

କାରଣ ସେ କନିଷ୍ଠ । ଜୁନିୟର୍ । ଅବଶ୍ୟ ତା' ଠିକ୍ । କଥାରେ ନାଇଁ- 'ଗାଁ ଯାକ ଲୋକେ ପଣସ ଖାଇଲେ ଭଣ୍ଡାରି ମୁଣ୍ଡରେ ଅଠା ।' ସେମାନଙ୍କର ସେଇ ସ୍ଥିତି । ସିଏ କାହିଁକି ସାନ ହେଉଥିଲା କି ? ହଉ, ତାହାହେଲେ ଦିଆଯାଉ ତାକୁ କାରଣ ଦର୍ଶାଅ ନୋଟିସ୍ ।

ସାନବୋହୂ ସପକ୍ଷରେ ମଧ୍ୟ ଯୁକ୍ତି ଅଛି । କାରଣ ତା' କଅଁଳା ପୁଅଟି କାନ୍ଦିଲା । ତାକୁ ତ

ପୁଣି ସମ୍ଭାଳିବାକୁ ହେବ । ବିଚାରିଟି ତାକୁ ବୋଧ ସୋଧ ଦେବାରେ ଲାଗିଗଲା । ଆଚ୍ଛା, ତା' ହେଲେ ଅସଲ ଦୋଷ ହେଲା- ସେଇ କଅଁଳା ପୁଅର । ସେ କାହିଁକି କାନ୍ଦୁଥିଲା ଯେ? ଯଦିବା ତା'ର କାନ୍ଦିବାର ଥିଲା, ସେ ଠିକ୍ ଗଉଡ଼କୁ ଖାଇବାକୁ ଦେବାବେଳେ କାହିଁକି କାନ୍ଦିଲା ? ଆଗରୁ କି ତା' ପରେ କାନ୍ଦିଥିଲେ ଚଳି ନଥାନ୍ତା । ଅତଏବ ପଚରାଯାଉ ତା'କୁ । ଦେଖିବା ସେ କି ଜବାବ ଦେଉଛି । ଅବଶ୍ୟ କଅଁଳା ପୁଅଟା ଯେତେବେଳେ ସେ ତ ଲିଖିତ ଉତ୍ତର ଦେଇପାରିବନି । ତା' ହେଲେ ମୌଖିକ ଉତ୍ତର, ତା' ବି କ'ଣ ଦେଇପାରିବନି ? ଦବନି କାହିଁକି ? କାଳି ଗାଈଠୁ ଯଦି କଥା ବାହାରିଲା, ଇଏତ ମଣିଷ ଛୁଆଟା । ଇଆଠୁ ଉତ୍ତର ନ ବାହାରିବ କାହିଁକି ? ତେବେ କଣ ହେବ ସେଇ କଅଁଳା ଛୁଆଟିର ଉତ୍ତର ?

ସେ କହିବ- ଧୂଳିଆ ଜନ୍ଦାଟା ଥିଲାଥିଲା ସେତିକି ବେଳକୁ କାମୁଡ଼ି ଦେଲା । ମୁଁ କଅଣ କରିଥାନ୍ତି ଯେ? ହଁ ତା' ହୋଇପାରେ । ଧୂଳିଆ ଜନ୍ଦାତ ଆଉ ତା' କ୍ଷୁଦ୍ରାଦପି କ୍ଷୁଦ୍ର ହସ୍ତ ସମାନ ଆଗ ଗୋଡ଼ରେ ଘଣ୍ଟା ବାନ୍ଧି ନଥିଲା ଯେ ତାକୁ ଦେଖି କିମ୍ବା ଗଉଡ଼ର ସୁବିଧା ଅସୁବିଧା ଅନାଇ କାମୁଡ଼ି ଥାନ୍ତା ବା ନ ଥାନ୍ତା । ସୁତରାଂ ସେ ତା'ର ସୁବିଧା ପାଇଲାରୁ କାମୁଡ଼ିଦେଲା ସେଇ ନିରିହ ନିରପରାଧ କଅଁଳା ଛୁଆଟିକୁ । ସେ ଦୁଷ୍ଟ ଦୁର୍ବୃତ୍ତ ଧୂଳିଆ ଜନ୍ଦାକୁ ଏଥିପାଇଁ କାହିଁକି କଠୋରରୁ କଠୋରତର ଏବଂ ତଥିଉତ୍ତାରୁ କଠୋରତମ ଦଣ୍ଡବିଧାନ କରାନଯିବ? ପଚରାଯାଉ ତାକୁ । ଦେଖାଯାଉ କିଏ କରୁଛି ତା' ପାଇଁ ଓକିଲାତି ।

ସେ ନିଜେ ଜବାବ୍ ଦେବ- 'ମୁଁ ଭୂଇଁ ତଳେ ତଳେ ଥାଏ । କଅଁଳ ମାଉଁସ ଟିକିଏ ପାଇଲେ ରୁଟ୍ କିନାଏ ଖାଏ ।' ଏଁ, ଭୂଇଁ ତ୍ଳେ ତଳେ ? ସେ କଣ ଖଣି ଲିଜ୍ ନେଇଛି ନା ଖଣି କାନତରାଟ ? ଭୂଇଁ ତଳେ ତା'ର କି ବିଜିନେସ୍ । ହେଲା ଏବେ, ସେଠି କାହାକୁ କାମୁଡ଼ି ପାରିଲାନି ? ଏଇନା ପତ୍ତୁ ସେ କେଉଁ ଅଧିକାରରେ କଅଁଳା ଛୁଆକୁ କାମୁଡ଼ିଲା । କହୁଚି କ'ଣ ନା କଅଁଳ ମାଉଁସ ଟିକିଏ ପାଇଲେ ରୁଟ୍କିନା ଖାଇଦେବ । କେମନ୍ତ ହେ । ସେ ଏମିତି ଖାଇଲା ବାଲା ହୋଇଛି । ତେବେ ଏଭଳି ପରିସ୍ଥିତିର ନିରାକରଣ ଉପାୟ ?

ତଳଆଡୁ ବତାଇବା ନା ଉପର ଆଡୁ ।

ଆଗ ତଳଆଡୁ କୁହାଯାଉ ।

ପ୍ରଥମେ ଯଦି କଅଁଳା ଛୁଆଟି ତା' କଅଁଳ ଆଙ୍ଗୁଠିରେ ଜନ୍ଦାକୁ ଚିପିଦେଇ ମାରି ଦେଇଥାନ୍ତା, ତେବେ ଏତେ ଏତେ କାଣ୍ଡ ଘଟି ନଥାନ୍ତା । ସୁତରାଂ ମୂଳରୁ, ମାନେ ପ୍ରଥମରୁ ଦୁଷ୍ଟମାନଙ୍କର ବିନାଶ; ଅର୍ଥାତ୍ ଶ୍ରୀମଦ୍ ଭାଗବତର ବାଣୀ ଅନୁସାରେ- 'ମୂଳୁ ମାଇଲେ ଯିବ ସରି ।'

ମାରିଦେଇଥାନ୍ତା ! ମାନେ ଆଇନ୍‌କୁ ନିଜ ହାତକୁନେଇଥାନ୍ତା । ଅବଶ୍ୟ ଦୁଷ୍ଟ ନିଧନ ପାଇଁ ଉପାୟ ବା କ'ଣ । ତଥାପି କଥାଟା ଠିକ୍ ଲାଗୁନି । ହେଉ ଏବେ ତାକୁ ଦିଆଯାଉ ସେ ସୁଯୋଗ । କଲେଜରେ ନାଁ ଲେଖାଇ ଦୁଷ୍ଟାମି କରିବା ଆଗରୁ କିମ୍ବା ପରୀକ୍ଷା ବେଳେ ବେଧଡ଼କ କପି କରିବାର ଅଧିକାର ପାଇଁ ଦାବି କରିବା ଆଗରୁ ସେମିତି କିଛି ଗୋଟାଏ ପ୍ରାକ୍‌ଟିସ୍ କରିଥାଉ ସେ । ଆଚ୍ଛା ଏବେ ଉପର ଆଡୁ ଉପାୟ କଣ ଅଛି କୁହାଯାଉ ।

ଉପର ଆଡୁ ବିଚାରିଲେ- ଗଉଡ଼ର କର୍ତ୍ତବ୍ୟ ପରାୟଣତା । ଗଉଡ଼ ଯଦି ପେଟରେ ଓଦାକନା ପକାଇ ତା' କର୍ତ୍ତବ୍ୟ ତୁଲାଇ ଥାଆନ୍ତା, ତେବେ ଏତେବଡ଼ କାଣ୍ଡ ଘଟିନଥାନ୍ତା । ଓଦାକନା କଣ କି- ଟିକିଏ ଡେରିରେ ଖାଇଥାଆନ୍ତା । ଯା ବୋଲି ସେ ବିଳମ୍ବ ପାଇଁ ଗାଈଟିକୁ ନଜଗି ଛାଡିଦେବ ? ଜଗିବା କାମଟା ଯେ ତା'ର ଦାୟିତ୍ୱ, ସେ ତାହା ବନ୍ଦ କରିଦେବ, ମାନେ ଷ୍ଟ୍ରାଇକ୍ କରିଦେବ । ନାଃ । ଏଇଟା ଠିକ୍ ନୁହେଁ । ଉଆଜିବ୍ କଥା ନୁହେଁ । ଉପରଆଡୁ ଧରିବାକୁ ହେବ ।

ତା' କରିଦେଲେ, ନିରପରାଧ କଅଁଳା ପିଲାମାନଙ୍କୁ ଧୂଳିଆ ଜନ୍ଦାମାନେ କାମୁଡ଼ିବେ ନାଇଁ ତ ? ଭାବିବାକୁ ହେବ, ଫୁଲଗଛମାନଙ୍କର ସୁରକ୍ଷା ଓ କଅଁଳା ପିଲାମାନଙ୍କୁ ନିରାପଦରେ ବଢାଇବା ଏତେ ସହଜ କଥା ନୁହେଁ । ଏହା ପରିବେଶ ସୁରକ୍ଷା, ଶିଶୁ କଲ୍ୟାଣ ଓ ପଶୁ ବିଭାଗର ବିଷୟ । ପୁଣି ଏଥିରେ ପୁଲିସ୍ ବିଭାଗର ଦାୟିତ୍ୱ ଓ ଦକ୍ଷତା କଥା ବି ଆସିଯିବ । ଭୂଇଁ ତଳେ ତଳେ ଥାଇ ସୁବିଧା ସୁଯୋଗ ଉଣ୍ଡି କାମୁଡ଼ାଏ କଅଁଳ ମାଂସ ଚାଖିବା ଦୁର୍ଜନ ଜନ୍ଦାମାନଙ୍କ ସାହସକୁ ଜବତ୍ କରିବାଟା କିଛି ଉଣା କି ହାଲୁକା ଦାୟିତ୍ୱ ନୁହେଁ । ଏଇ ଜନ୍ଦାସମସ୍ୟା ଅତୀବ ଗୁରୁତ୍ୱପୂର୍ଣ୍ଣ । ସେଇଠୁ ?

ମୋ କଥାଟି ସରିଲା
ଫୁଲ ଗଛଟି ମରିଲା

କାରଣ ?

ଉପରେ ଲେଖାହୋଇଛି ।

ତେବେ କଥା ସିନା ସରିଲା ; ଦାୟିତ୍ୱଟା ତ ଆରମ୍ଭ ହେଲା । ମୁଣ୍ଡରେ ନଦା ହୋଇଗଲା ବୋଲ ।

କିଓ, ଦାୟିତ୍ୱର କୋଉ ସ୍ଥାୟିତ୍ୱ ଅଛି କି ? ଏ ରାଇଜରେ ପରା ମୁଣ୍ଡ ହଲେଇ ଦେଲେ ସେତକ ତଳେ ଖସିପଡ଼ି ଚୁନା ହୋଇଯିବ । ସେଇଠୁ ତା' କାମ ଫତେ । ତା' ପର କଥା ଦେଶର ସଚେତନ ନାଗରିକମାନେ ବୁଝନ୍ତୁ- କୋଉ ଦାୟିତ୍ୱଟା କିଏ କେମିତି କାଇଦାରେ ଓ ହୁସିଆର୍ ହୋଇ ଖସାଉଛି । ସେଥିଲାଗି ଖାଲି ଆମରି ମୁଣ୍ଡ କାହିଁକି ବଥାଉଥିବ ?






## ଦାଣ୍ଡସୁନ୍ଦର

**ଗାଳ୍ପିକ : ଅରବିନ୍ଦ ପଟ୍ଟନାୟକ**

ପ୍ରକାଶକ : ଭାରତ ଭାରତୀ ଗଜପତି ନଗର, ସୂତାହାଟ, କଟକ
ମୂଲ୍ୟ : ୭୦ ଟଙ୍କା, ପୃଷ୍ଠା : ୮୮

"ଦେଉଳରେ ପୂଜକଙ୍କୁ ପଇସା ଦେଲେ, ସେ ଠାକୁରଙ୍କୁ ଡାକିହାକି ମନ୍ତର ପଢ଼ି ତାଙ୍କ ଶୁଭଦୃଷ୍ଟି ତମ ଆଡକୁ ଢଳେଇ ନେବ । କଚେରିରେ ଓକିଲ, ଚାକିରିଆଙ୍କୁ ପଇସା ଦେଲେ, ସେମାନେ ହାକିମଙ୍କୁ ତମ ତରଫରେ ପଟେଇ ନେବେ । ଏଇ ସଂସାରରେ ଧରମ ଅଛି କୋଉଠି, ନ୍ୟାୟ ମିଳିବ କୋଉଠୁ ?'' ଘନ କକେଇଙ୍କ ଜୀବନରେ ଏମିତି ଘଟଣାଟିଏ ଘଟି ଯାଇଥିଲା । ଗୌର ପଣ୍ଡିତ ଘନ କକେଇଙ୍କ ବିଶ୍ୱାସରେ ବିଷ ଦେଇ ଦେଇଥିଲେ । ସମାଜରେ ଏଭଳି ବିଶ୍ୱାସଘାତକଙ୍କର ଯେ ଅଭାବ ନାହିଁ 'ଘନ କକେଇ' ଗଳ୍ପରେ ଗାଳ୍ପିକ ମର୍ମସ୍ପର୍ଶୀ ଭାବେ ତାହା ଉପସ୍ଥାପିତ କରିଛନ୍ତି । ତେବେ ଟିମାପୁଅପରି ଭଲ ମଣିଷର କଥା କଳ୍ପକୁ ଏକ ସକାରାତ୍ମକ ପରିଣତିରେ ପହଞ୍ଚାଇଛି । ସଂକଳନର ଶୀର୍ଷକ ଗଳ୍ପ 'ଦାଣ୍ଡସୁନ୍ଦର' ମଧ୍ୟ ଯୌତୁକପରି ଏକ ସାମାଜିକ ସମସ୍ୟା କିପରି ଗୁଣନିଧିଙ୍କ ମନଭିତରେ ଅନେକ 'କିନ୍ତୁ' ହେଇ ତାଙ୍କୁ ହନ୍ତସନ୍ତ କରିଛି ତାହାର ଚିତ୍ର ରହିଛି । ସମାଜ, ଜୀବନ ଓ କାଳର ଅନେକ ପ୍ରତିଛବି ରହିଛି ସଂକଳନର ଗଳ୍ପଗୁଡ଼ିକରେ । ପଦ୍ମତୋଳା, ଅଜାଙ୍କ ଚିତା, ସତେକି ସେ ଡୋରି ଛିଡ଼ି ଯାଇଛି, ହରି ଭାଇନା, ସଦାନନ୍ଦର ଜୀବନ, ନିଚୁଦ୍ଦିଷ୍ଟର ଠାବ, ନଟିଦାସଙ୍କ ଗପ ପରି ଚଉଦଟି ସୁଖପାଠ୍ୟ ଗଳ୍ପ ରହିଛି ଏହି ସଂକଳନଟିରେ ।

**ସମ୍ବାଦ : ୭ ଜୁନ୍ ୨୦୧୫ , ସାହିତ୍ୟ ପୃଷ୍ଠା**



ଡକ୍ଟର. ଅରବିନ୍ଦ ପଟ୍ଟନାୟକ

ଡକ୍ଟର ଅରବିନ୍ଦ ପଟ୍ଟନାୟକ (୧୯୪୧) ଜଣେ ସୃଜନଶୀଳ ଲେଖକ, କୃତବିଦ୍ୟ ଅଧ୍ୟାପକ ଓ ଗବେଷକ । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଦୀର୍ଘ କାଳର ଅଭିଜ୍ଞତା ଓ ଅଧ୍ୟୟନ ତାଙ୍କର ଲେଖା ଓ ଆଲୋଚନାରେ ପ୍ରତିଫଳିତ । ତାଙ୍କର ବ୍ରତ ସାହିତ୍ୟ (ମନୋଗ୍ରାଫ୍) ଓ ଓଡ଼ିଆ ଲୋକକଥା ଯଥାକ୍ରମେ ଓଡ଼ିଶା ସାହିତ୍ୟ ଅକାଦେମୀ ଓ କେନ୍ଦ୍ର ସାହିତ୍ୟ ଅକାଦେମୀ ଦ୍ୱାରା ପ୍ରକାଶିତ । ଏହା ବ୍ୟତୀତ ତାଙ୍କର- ଓଡ଼ିଶାରେ ଲୋକଧର୍ମର ପରମ୍ପରା (ସଂଦର୍ଭ) ପରମ୍ପରା ଓ ମୂଲ୍ୟବୋଧ (ପ୍ରବନ୍ଧ ସଂକଳନ) ହେ ଅତୀତ କଥା କହ (ପ୍ରବନ୍ଧ ସଂକଳନ), ପ୍ରବନ୍ଧରେ ନାନାକଥା (ପ୍ରବନ୍ଧ ସଂକଳନ), ପୁରାଣ ପରମ୍ପରା ଓ ଭାଗବତ (ପଣ୍ଡିତ ନୀଳମଣି ମିଶ୍ର ସ୍ମାରକୀ ଭାଷଣ), ଲୋକ ସାହିତ୍ୟ (ପ୍ରବନ୍ଧ) ମନ କହୁଛି ଘୋଡ଼ା ଚଢ଼ିବି (ରମ୍ୟ ରଚନା) ଦାଣ୍ଡସୁନ୍ଦର (ଗଳ୍ପ ସଂଗ୍ରହ) ଅୟନାନ୍ତ (ଉପନ୍ୟାସ), ସାରଥିର ଶପଥ (କବିତା) ଏବଂ Horse Egg and other stories, Story of a little bird and Uncle Tiger, ବେଙ୍ଗର ସାହସ, ଇଏ ଆମ ପୁରାଣ କଥା, ଆମ ସ୍ୱାଧୀନତା ସଂଗ୍ରାମର କାହାଣୀ, ତଥାପି ଏକାଭଳି, ଖୁସିର ସାଥୀ, କାଉରୁ କଣ୍ଢେଇ, 'ଅ' ଠାରୁ 'କ୍ଷ', ଓଡ଼ିଶାର ପର୍ବପର୍ବାଣି, ଟିଁ ଟିଆ ଛୋଟ ଚଢ଼େଇଟିଏ ପ୍ରଭୃତି କେତେଖଣ୍ଡି ଶିଶୁ ସାହିତ୍ୟ ପୁସ୍ତକ ପ୍ରକାଶିତ ।




ରାଷ୍ଟ୍ରୀୟ ସାହିତ୍ୟ ସଂସ୍ଥାନ

ସାହିତ୍ୟ ଭବନ, ଭୁବନେଶ୍ୱର

ISBN 978-81-93-1182-1-6

